# ପ୍ରଣୟ-ବଲ୍ଲରୀ ।

ଶ୍ରୀ ଗଙ୍ଗାଧର ମେହେର ପ୍ରଣୀତ ।

ପ୍ରଥମ ମୁଦ୍ରଣ ।

**Printed by V. Kar.**
THE UTKAL SAHITYA PRESS,
Cuttack.
**1915.**

ମୂଲ୍ୟ ଟ ୧ ୵

# ଉପହାର ।

ପରମ ଆଦରସହକାରେ

ଏହି

# ପ୍ରଣୟ-ବଲ୍ଲରୀ

କାବ୍ୟଖଣ୍ଡି

______________________

ଉପହାର

ପ୍ରଦତ୍ତ ହେଲା ।

ତା ______ } ଶ୍ରୀ ______



ସମ୍ବଲପୁର ଜିଲ୍ଲା ବୋଡ଼ାସମ୍ବରର

ଉଦାର-ହୃଦୟ ଦାନଶୀଳ ଜମିଦାର

ଶ୍ରୀମାନ୍ ଗ୍ୟୁ ଲାଲ ରାଜେନ୍ଦ୍ର ସିଂହ ବରିହା ବାହାଦୁରଙ୍କର

ସମ୍ପୂର୍ଣ୍ଣ ବ୍ୟୟରେ

ଏବଂ

ତଦୀୟ ଦେବାନ ସ୍ୱଦେଶହିତୈଷୀ

ଶ୍ରୀଯୁକ୍ତ ବସ୍ତୁ ଭୁବନେଶ୍ୱର ବହିଦାର ସାହେବଙ୍କ

ହିତୈଷଣାରେ

ଏହି ପୁସ୍ତକ ପ୍ରକାଶିତ ହୋଇଥିବାରୁ

ଗ୍ରନ୍ଥକାର ସେମାନଙ୍କ ନିକଟରେ

ହୃଦୟର ଗଭୀର କୃତଜ୍ଞତା

ଅର୍ପଣ କରୁଅଛି ।



# ଭୂମିକା ।



ମେନକା ଅପ୍ସରାର ସୌନ୍ଦର୍ଯ୍ୟ-ଦେବତା ଓ ପ୍ରଲୋଭନ-ଅସୁର ମିଳି ବିଶ୍ୱାମିତ୍ରଙ୍କର ତପଃସିନ୍ଧୁ ମନ୍ଥନ କରିବାରୁ ଶକୁନ୍ତଳାରୂପିଣୀ ଲକ୍ଷ୍ମୀଙ୍କର ଆବିର୍ଭାବ ଓ ଚିରସ୍ଥାୟୀ କବିତାମୃତର ଉତ୍ଥାନ ହେଲା । ସେହି ଅମୃତକୁ ବୈୟାସିକୀ ଭାରତୀ ମୋହିନୀରୂପରେ ସୁବୁଧରୂପ ସୁବୁଧସମାଜରେ ପରିବେଷଣ କରିଦେଲା । ମହାକବି କାଳିଦାସ ସେହି ଅମୃତରେ ନାଟକରୂପ ମିଷ୍ଟାନ୍ନ ପ୍ରସ୍ତୁତ କରି ସୁବୁଧସମାଜରେ ପ୍ରଶଂସାସ୍ପଦ ହୋଇଅଛନ୍ତି । ପୃଥିବୀର ଅନ୍ୟତମ ମହାକବି ଜର୍ମାନ ସାହିତ୍ୟାକାଶର ପୂର୍ଣ୍ଣଚନ୍ଦ୍ର ମହାତ୍ମା ଗେଟେ କାଳିଦାସଙ୍କର ଶକୁନ୍ତଳା-ନାଟକର ସ୍ୱର୍ଗୀୟ ମାଧୁର୍ଯ୍ୟରେ ମୁଗ୍ଧ ହୋଇ ମହାକବିଙ୍କର ଭାରତ-ପ୍ରସିଦ୍ଧ ଯଶକୁ ଜଗତ୍ପ୍ରସିଦ୍ଧ କରି ଦେଇଅଛନ୍ତି । ଗୁଣର ମହତ୍ତ୍ୱ ଗୁଣୀ ବୁଝେ । ମହାତ୍ମା ଗେଟେ ମୁକ୍ତ-କଣ୍ଠରେ ଗୁରୁଗମ୍ଭୀରସ୍ୱରରେ କହିଅଛନ୍ତି—

"Wouldst thou the young year's blossoms
and the fruits of its decline,
And all by which the soul is charmed,
enraptured, feasted, fed?
Wouldst thou the earth and heaven
itself in one sole name combine?
I name thee, O Sakuntala!
and all at once is said."

ଆଜି କାଳିଦାସଙ୍କର ଶକୁନ୍ତଳା ପୃଥିବୀର ସବୁଠି ଭିନ୍ନ ଭାଷାରେ ଅନୂଦିତ ହୋଇ ରସିକମାନଙ୍କର ହୃଦୟକୁ ଅମୃତ ଉତ୍ସରେ ପ୍ଲାବିତ କରୁଅଛି । ଭିନ୍ନ ଭାଷାରେ ମୂଳ କବିତାର ଭାବ ପୂର୍ଣ୍ଣ ରୂପେ ପ୍ରକାଶ କରିବା ସୁକଠିନ କାର୍ଯ୍ୟ, ଗୋଟିଏ ହସ୍ତୀ ସ୍ୱାଧୀନଭାବରେ ଚାଲିଗଲେ ତାହାର ଗତିର ଯେଉଁ ଶୋଭା ଥାଏ, ଅନ୍ୟ ଗୋଟିଏ ହସ୍ତୀ ପୂର୍ବଗାମୀ ହସ୍ତିର ଠିକ ପଦଚିହ୍ନ ଉପରେ ପଦକ୍ଷେପ କରି କରି ଚାଲିଲେ ସେ ଶୋଭା ରହି ପାରେ ନାହିଁ; କିନ୍ତୁ ସେହି ମାର୍ଗରେ ହଂସର ନୈସର୍ଗିକ ଗତି ଦର୍ଶନୀୟ ହୋଇଥାଏ । ମହାକବି କାଳିଦାସଙ୍କର ଗତିପଥ ଲକ୍ଷ୍ୟ କରି ଏହି ପୁସ୍ତକର ରଚନା ହୋଇଅଛି ଏବଂ ଚରିତଟି ପ୍ରଣୟ-ପ୍ରଧାନ ଥିବାରୁ 'ପ୍ରଣୟ-ବଲ୍ଲରୀ' ନାମ ଧାରଣ କରିଅଛି ।

ମହାକାବ୍ୟ ମହାଭାରତର ପଥ ପରିତ୍ୟାଗ କରି ପଦ୍ମପୁରାଣର ମାର୍ଗରେ ମହାକବି କାଳିଦାସଙ୍କର ଶକୁନ୍ତଳା ନାଟକ ରଚିତ ହୋଇଥିବାର କଥିତ ହୁଏ; ତଥାପି କବି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ଛାଡି ନାହାନ୍ତି ଓ ତହିଁ ନିମନ୍ତେ ସେ ପ୍ରଶଂସ୍ୟ ହୋଇଅଛନ୍ତି । କେହି କେହି କହନ୍ତି ଯେ, ନାଟକରେ ନାୟକ ନାୟିକାଙ୍କର ହୃଦୟର ଗୁପ୍ତ ଚିନ୍ତା ସବୁ ବସ୍ତୁତରୂପେ ପରିସ୍ଫୁଟ ହୋଇ ପାରେ ନାହିଁ, ଏହି କଥାମାନ ଚିନ୍ତିତ ହୋଇ ଏହା ଉତ୍କଳଭାଷାରେ କାବ୍ୟରୂପେ ସ୍ଥାନେ ସ୍ଥାନେ ଲେଖକର ସ୍ୱତନ୍ତ୍ରତା ପ୍ରଯୁକ୍ତ ହୋଇଅଛି ।

ବନ୍ଧୁ ପାଠକବୃନ୍ଦ ! ଏଥିରେ ମୂଳ କବିତାର ରସାସ୍ୱାଦ ଖୋଜିଲେ ନିଶ୍ଚୟ ବଞ୍ଚିତ ହେବେ । ଯେପରି ଅମୃତ ଅଭାବରେ ନବାତ ବ୍ୟବହାର ହୋଇଥାଏ । ମୂଳ କବିତାର ଦ୍ରବିତ ରସ ଅଭାବରେ ଏହି କବିତା ସେହିପରି ବ୍ୟବହାରରେ ଆସି ପାରିବ କି ନା, ସନ୍ଦେହ; ତହିଁ ଉପରେ ନବାତ ପଣାରେ ଲେମ୍ବୁରସ ପ୍ରକ୍ଷେପ ପ୍ରାୟ ଆଦର୍ଶର ଅନୁକରଣରେ ମୂଳକବିତା ରସ ଉପରେ ଉତ୍କଳ ଲେଖକର ସ୍ୱକୀୟ କବିତା-ରସ ପ୍ରକ୍ଷିପ୍ତ ହୋଇଅଛି । ତହିଁ ନିମନ୍ତେ ଏହା କଦର୍ଯ୍ୟ କିମ୍ବା ଅତ୍ୟନ୍ତ ଦୋଷରୁ ଅପେୟ ହୋଇ ନ ଥିଲେ ରକ୍ଷା ।

ମତ୍‌ପ୍ରଣୀତ "କବିତାକଲ୍ଲୋଳ"ରେ ପ୍ରଣୟୀଙ୍କର ପାଠ କରି ମାନନୀୟ ଶ୍ରୀମାନ୍ ଗମ୍ଭୀରାଚରଣ ମିଶ୍ର M. A., B. L. ପ୍ରମୁଖ ଅନେକ ସାହିତ୍ୟପ୍ରେମିକ ମହାତ୍ମା ପ୍ରଣୟୀଙ୍କୁ ପରିବର୍ତ୍ତିତ ପ୍ରଣୟ-ବଲ୍ଲରୀରୂପେ ଦେଖିବାକୁ ସମ୍ପୃହାକାଂକ୍ଷା ପ୍ରକାଶ କରିଥିଲେ ଏବଂ ମୋର ପରମହିତୈଷୀ ସୁହୃଦ୍ ଶ୍ରୀମାନ୍ ବ୍ରଜମୋହନ ପଣ୍ଡା ମହୋଦୟ ଅନବରତ ପୃଷ୍ଠପୋଷକତାସମ୍ବଳିତ ଉତ୍ତେଜନା ପ୍ରଦାନ କରିଅଛନ୍ତି । ଏହା ସେମାନଙ୍କର, ତଥା ଉତ୍କଳର ସହୃଦୟ କାବ୍ୟରସିକବୃନ୍ଦଙ୍କର କିଞ୍ଚିତ୍ ରୁଚିକର ବୋଧ ହେଲେ ମୁଁ ନିଜକୁ କୃତାର୍ଥ ଜ୍ଞାନ କରିବି । ଇତି ।

ପଦ୍ମପୁର }
୨୫ । ୧୦ । ୧୯୧୪ । }

ବିନୟାବନତ
ଗ୍ରନ୍ଥକାର ।



U. RAY & SONS, CALCUTTA

'କୁଞ୍ଜବନ ବଣ୍ଟା ସଟିଗଲ' ବୋଲି
ସଖୀଙ୍କୁ କହୁଲ ଛଳେ,
ଚିତ୍ରଲେଖା ବୋଲେ "ପୁଷ୍ପବନ ବଣ୍ଟା
ମୀନାକ୍ଷି, ଘଣ କି ଗଲ ?"

# ପ୍ରଣୟ-ବଲ୍ଲରୀ ।

## ପ୍ରଥମ ସର୍ଗ ।

### ପ୍ରଣୟାଙ୍କୁର ।

ଜୟ ବେଦବ୍ୟାସ    ଜୟ କାଳିଦାସ
ଭାରତୀ-ପ୍ରିୟ-ନନ୍ଦନ,
ତୁମ୍ଭେ ଜ୍ଞାନଗୁରୁ    କବିମଣ୍ଡଳୀର
ଲଲାଟ-ଶୋଭି-ଚନ୍ଦନ ।

ତୁମ୍ଭ ଚରଣରେ    ଲଗାଇଛି ବାନ୍ଧି
ମୋ ହୃଦ-ଦୃଢ଼-ବନ୍ଧନ,
ତୁମ୍ଭ ପଛେ ଥାଇ    ଭାରତୀ ଚରଣେ
ବିନୟେ କରେଁ ବନ୍ଦନ ।

ଯେଉଁ ପଥେ ଗମି    ଭ୍ରମିଛ ଗୁରୁ ହେ
ଭାରତୀ-କୁସୁମ-ବନେ,
ସେହି ପଥେ ଯାଇ    ତୋଳିବି କୁସୁମ
ପଡ଼ିବ ଯେତେ ନୟନେ ।

## ପ୍ରଣୟ-ବଲ୍ଲରୀ ।

ନୟନେ ପଡ଼ିବ ଯତନେ ଯଚ୍ଛିବ
ନ ପାଇବ ମୋର ହସ୍ତ,
ସେ ଉଚ୍ଚ ଡାଳର କୁସୁମ ଚୟନେ
ରହିବ ହୋଇ ନିରସ୍ତ ।
ତୋଳିଲ କୁସୁମେ ହାର ଗୁନ୍ଥି ଦେବ
ଉତ୍କଳ-ଜନନୀ-ହୃଦେ,
ଭକ୍ତିରେ ଜନନୀ- ପାଦ-ପଦ୍ମେ ପୂଜ
ମନ ମଜ୍ଜାଇବ ମୁଦେ ।

ମୃଗୟା ବିନୋଦେ ଦୁଷ୍ମନ୍ତ ନରେଶ
ବିହାର କରନ୍ତି ବନେ,
ପ୍ରଫୁଲ୍ଲ ହୃଦୟେ ଧନୁଃଶର କରେ
ଶୋଭିତ ହୋଇ ସ୍ୟନ୍ଦନେ ।
ଭ୍ରମି ଭ୍ରମି ଏକ ମୃଗ ଆସି ହେଲା
ଅକସ୍ମାତ ନୃପ ଅଗ୍ରେ,
ଧନୁଃଶରଧାରୀ ନରେଶଙ୍କୁ ଦେଖି
ପଳାଇଲା ତହୁଁ ବ୍ୟଗ୍ରେ ।
ପଳାୟିତ ମୃଗ- ପଛେ ନୃପାଦେଶେ
ସୂତ ଚଳାଇଲା ରଥ,
କିନ୍ତୁ ଅତିଥିଲ- ଭଙ୍ଗି କରଥାଏ
କଙ୍କର ବନ୍ଧୁର ପଥ ।

## ପ୍ରଥମ ସର୍ଗ ।

ସ୍ୱଚ୍ଛନ୍ଦ-ସୁନ୍ଦର ଲମ୍ଫେ ଲମ୍ଫପାର
ଗଗନେ ଅର୍ଦ୍ଧ ଯାଇ
ଥରେ ଥରେ ମାତ୍ର ଦେଉଥାଏ ବନ-
ଭୂମିରେ ପାଦ ପକାଇ ।

ପୁଚ୍ଛ ଲପଟାଇ ଶିର ସଙ୍କୁଚାଇ
ଆଶୁଗ-ପତନ-ଭୟେ
ଗ୍ରୀବା ଭଙ୍ଗି ଥରେ ଥରେ ରଥେ଼ଂଗୃଢ଼ଁ
ପଳାଏ ପୁଣି ଅଗ୍ରେ ।

ଶରମ-ବହୁଳ- ମୁଖ-ଚ୍ୟୁତ ଦର-
କବଳିତ କୁଶମାଳ,
ଗମନ ପଥରେ ଇତସ୍ତତଃ ପଡ଼ି-
ଯାଉଥାଏ ସ୍ଥାନ ସ୍ଥାନ ।

ସମସ୍ଥାନ ଦେଖି ରଶ୍ମି ଛାଡ଼ ସତ
ଘୋଟକେ ଦେବାରୁ ଢିଳ,
କର୍ଣ୍ଣ ସପଟାଇ ଲଭି ଲମ୍ବପଦେ
ଅଶ୍ୱେ ହେଲେ ବେଗଶାଳୀ ।

ଖୁରୁ ଟେକ ଖୁର- ଧୂଳି ହୁରେ ଛାଡ଼
ଆଗରୁ ଥାନ୍ତି ଦଉଡ଼ି,
ବାହି ହେଲା ନାହିଁ ପାଦ ତାଙ୍କ ତଳେ
ପଡ଼େ କିବା ଯାନ୍ତି ଉଡ଼ି ।

ନରେଶଙ୍କୁ ଯାହା ଆଗେ ଦୂରେ ଥାଇ
ଦିଶୁଥିଲା ସାନ ସାନ,
ସହସା ନୟନ ଅଗ୍ରେ ବଡ଼ ବଡ଼
ଦିଶିଲା ସେ ଦ୍ରବ୍ୟମାନ ।
ବେଗ ପାର୍ଶ୍ୱ ବର୍ତ୍ତୀ ଦ୍ରବ୍ୟମାନ ତହିଁ
ଆଣିଲେ ସରଳ ଭ୍ରମ,
ଭଗ୍ନ ଭଗ୍ନ ଦ୍ରବ୍ୟ ଅଭଗ୍ନ ଦିଶିଲେ
ବକ୍ରୁର ଦିଶିଲା ସମ ।
ଦେଖୁଁ ଦେଖୁଁ ରଥ ଉପଗତ ହେଲା
ସାରଙ୍ଗ କଟ ସତ୍ୱର,
ସମକ୍ଷରେ ମୃଗ ଦେଖି ବସାଇଲେ
ଧନୁର୍ଗୁଣେ ରାଜା ଶର ।
"ମାର ନା, ମାର ନା, ଆଶ୍ରମ ମୃଗ ଏ"
ଏକାଳେ ହେଲା ଏ ଶବ୍ଦ,
ଶବ୍ଦ ଲକ୍ଷ କରି ତପସ୍ୱିଯୁଗଳ
ଦେଖି ରାଜା ହେଲେ ସ୍ତବ୍ଧ ।

ସସମ୍ଭ୍ରମେ ପୁଣି ସାରଥିକି କହି
ରୁହାଇଲେ ତହିଁ ରଥ,
ବେଗେ ଆସି ବେନି ତପସ୍ୱୀ ନିକଟେ
ଅଟକିଲେ ଟେକି ହସ୍ତ ।

ବୋଇଲେ, "ହେ ନୃପ, ଆଶ୍ରମ ମୃଗ ଏ
ବଧ ନୁହଇ ତୁମ୍ଭଙ୍କର,
ତୁଳାଗୁଚ୍ଛେ ବହ୍ନି ପ୍ରାୟେ ମୃଦୁ-ମୃଗ-
ଶରୀରେ ନ ଛାଡ଼ ଶର ।
କାହିଁ ବଜ୍ର-ସାର- ଶର ତୁମ୍ଭ, କାହିଁ
କୃଷ୍ଣସାର କ୍ଷୀଣପ୍ରାଣ,
ନୁହେ ତୁମ୍ଭ ଶର ଦୁର୍ବଳ ମାରଣେ,
ଜଗଇ ଆରତ ତ୍ରାଣ ।"
ବିନୟେ ନମିଲେ ମୁନିଙ୍କି ନୃପତି
ସାୟକ ପ୍ରତିସଂହରି,
ସହର୍ଷେ ତପସିଏ ପ୍ରଶଂସିଲେ "ସାଧୁ
ସାଧୁ ହେ ନୃପକେଶରି !
ସାଧୁ ପୁରୁବଂଶ- ଅବତଂସ ତବ
କୁଳ ଅନୁରୂପ କାମ,
ଲଭ ପୁତ୍ରରତ୍ନ ଶୂର ଚକ୍ରବର୍ତ୍ତୀ
ନିଖିଳ ସଦ୍‌ଗୁଣଧାମ ।
ଋଷିଙ୍କ ଆନନ୍ଦ ହେଉଅଛି ମନେ
ତୁମ୍ଭଙ୍କର ଆଗମନେ,
ସେ ଆନନ୍ଦ ଦିବେ ଆହ୍ଲାଦ ତାହାଙ୍କୁ
ଅତିଥି ହୋଇ ଏ ବନେ ।

କଣ୍ୱ ମୁନଙ୍କର ଆଶ୍ରମ ଦିଶୁଛି
ଦେଖନ୍ତୁ ମାଲିନୀ-ତଟରେ,
ତୀର୍ଥ ଯାଇଛନ୍ତି ମହର୍ଷି, ତାହାଙ୍କ
ଦୁହିତା ଛନ୍ତି କୁଟୀରେ ।

ଆମ୍ଭଙ୍କ ରାଜ୍ୟରେ ରହି ଧର୍ମ କର୍ମେ
ନ ଲଭି କେବେ ଅଶାନ୍ତି
ଆମ୍ଭଙ୍କ ଶାସନ- ପ୍ରଭାବକୁ ମୁନି
ସତତ ପ୍ରଶଂସୁଥାନ୍ତି ।

କର୍ମଶେଷେ ପ୍ରଭୁ- ପାଶେ କରୁଥାନ୍ତି
ଆମ୍ଭଙ୍କ ଶୁଭ-କାମନା,
ଥାନ୍ତେ ଯଦି ଆଜ ଆମ୍ଭଙ୍କ ଦର୍ଶନେ
ହୋଇଥାନ୍ତେ ପ୍ରୀତମନା ।

ଆସିଛନ୍ତି ଆମ୍ଭ ବାହୁଡ଼ିବେ ଯେବେ
ଆଶ୍ରମେ ନୋହୁ ସତ୍କୃତ,
ମହର୍ଷି ଶୁଣିଲେ ଆଶ୍ରମବାସିଏ
କଷ୍ଟେ ହେବୁଁ ତିରସ୍କୃତ ।"

ତପସ୍ୱୀ ଆଗ୍ରହ ଅନୁଗ୍ରହ ବୋଲି
ସ୍ୱୀକାର କରି ବଚନେ
ପଦକେ ତହିଁରୁ ଚଳିଲେ ନରେଶ
ଆଶ୍ରମପଦ ଦର୍ଶନେ ।

ତପୋବନ ମଧ୍ୟେ ଉପଗତ ହୋଇ
ଦେଖିଲେ ସର୍ବୌଭୂତଳେ,
ଶୁକ-ମୁଖ-ଭ୍ରଷ୍ଟ ତୃଣଧାନ୍ୟମାନ
ପଡ଼ିଛି ପାଦପ ତଳେ ।
ବୋଧ ହେଲା ବ୍ୟାଧ- ଭୟ ଶୁକଗଣ
ଛଡ଼ି ଦୂର ବସୁରଣେ
ସୁଖେ ରହୁ ବନ- ଘୋଷିକୁ ବନ୍ଧାନ୍ତି
ମରକତ-ଅପଘନେ ।
ପଦ୍ମରାଗ ନଷ୍ଟ ତଡ଼କଣ୍ଠ ଶୋଭା
ସେହିକାଳେ ଏକକାଳରେ
ଉପସ୍ଥିତ ହୋଇ ଗଲେ ନୃପଙ୍କର
ଭବରାଜ୍ୟ ଅଧିକାରେ ।
ପଡ଼ୁ ବେଢ଼ିଠାରେ ଇଙ୍ଗୁଦୀ-ନର୍ଯ୍ୟାସ-
ସ୍ନିଗ୍ଧ-ଶିଳା-ଖଣ୍ଡ-ଚୟ
ଦେଉଛନ୍ତି ଋଷି- ହସ୍ତରେ ଇଙ୍ଗୁଦୀ-
ବଦାରଣ ପରିଚୟ ।
ମୃଗକୁମାରଙ୍କ ଦୃଷ୍ଟି କୁଶାଙ୍କୁର
ଭକ୍ଷଣରେ ଚରବ୍ୟସ୍ତ,
ଚରୁଛନ୍ତି ମୃଗ- ଗଣ ବାଢ଼ି ନୃପ
ଦର୍ଶନେ ନ ହୋଇ ତ୍ରସ୍ତ ।

## ପ୍ରଣୟ-ବଲ୍ଲରୀ ।

ବାୟୁତରଙ୍ଗର ଝୁଲାଇଲେ ଯୌତ-
ମୂଳ ଉର୍ଦ୍ଧ୍ୱ ତରୁମାନ,
ଚଳୁ ହୋମଧୂମ ଲଗି ଲଗି ତାଙ୍କ
ପତ୍ରରାଜି କ୍ଷଣେ ମ୍ଳାନ ।

କଞ୍ଚୁକିରେ ରାଜା ମୃଗୟାର ବେଶ
ତେଜି ସୂତେ ଦେଇ ରଥ
ବିନୀତ ବେଶରେ ଗଲେ ଲକ୍ଷ କରି
ଆଶ୍ରମ-କୁଟୀର-ପଥ ।

ଆଶ୍ରମ-ମାଧୁରୀ ଦେଖି ଦେଖି ରାଜା
ଚଳିଥାନ୍ତି ଧୀରେ ଧୀରେ,
ଯେଉଁ ଦିଗେ ଦୃଷ୍ଟି ଯାଏ ସେ ଦିଗରୁ
ନ ପାରେ ଫେରି ଅଚିରେ ।

ଯଦି ବଳେ ଫେରେ ଅନ୍ୟ ଦିଗ ପୁଣି
କରଇ ଆକର୍ଷଣ,
ଆକର୍ଷଣ ନୁହେ, କରୁଥାଏ ଦିବା
ପୀୟୂଷ-ଧାର ବର୍ଷଣ ।

ବଣଜନ ମନେ ପ୍ରୀତି-ପ୍ରସ୍ରବଣ
ଢାଳଇ ଯାହାଙ୍କ ରୂପ,
ତପୋବନ ଦୃଶ୍ୟ ଦରଶନେ ମୁଗ୍ଧ
ହୁଅନ୍ତି ଅଜ ସେ ଭୂପ ।

ତରୁଛାୟା ସ୍ନେହ          ପାଇ ନରନାଥ
ଭାବନ୍ତି ମନେ ବିଚାର,
"ଏ ଶୀତଳ ଶାନ୍ତି-          ପ୍ରଦ ଛାୟା ସମ
ନୁହେ ରତ୍ନ-ଛାୟା ଛାର ।

ଏଣୁ ପୂର୍ବ ହସ୍ତେ          ରାଜ୍ୟଭାର ଦେଇ
ରଘୁବଂଶ ନୃପଗଣ
ଶେଷେ ଗମୁଥିଲେ          ଶାନ୍ତି ଲଭିବାକୁ
ଶାନ୍ତିମୟ ତପୋବନ ।"

ଦୃଶ୍ୟେ ଲାଗୁଥାଏ          ଦୃଷ୍ଟି ନୃପଙ୍କର,
ଭାବେ ଭାସୁଥାଏ ମନ,
ଏକାଳେ କର୍ଣ୍ଣରେ          ପଡ଼ିଲା ରମଣୀ-
ରମଣୀୟ-କଣ୍ଠସ୍ୱନ ।

ଚମକି ଚାହିଁଲେ          ପାଶେ କେହି ନାହିଁ
ଶବ୍ଦ ଲକ୍ଷ କରି ଯାଇ
ଲୂତାଜାଲ ଭେଦ          ଦେଖିଲେ ଅଦୂରେ
ପାଦପ ଉହାଡ଼େ ଥାଇ ।

ଅନୁପ ପ୍ରତିମା          ଛାୟେ ମନୋହର-
ମୂରତି ଯୁବତୀ ତିନି,
ରୂପ-ଗୁଣେ ଦଳ          ଦେବେ ଯେଉଁ ଗୁରୁ-
ଗରବେ ସୁର-କାମିନୀ ।

ବାମ ବକ୍ଷେ ଜଳ- କୁମ୍ଭ ଧରି ଅଙ୍ଗ—
ଲଳିତା ବଙ୍କିମେ ଢାଳି
ବାମେତର ଭୁଜ ହଲାଇ ହଲାଇ
ଅସନ୍ଦ ମନ୍ଥରେ ଚାଲି ।

ଚାଲୁଥାନ୍ତି କେହୁ କେହୁ କାହା ଅତି
ଆଗେ ବା ଅତି ପଛରେ,
ପ୍ରେମାଳାପ କରି କରି କଉତୁକେ
ନାନା ମତେ ପରସ୍ପରେ ।

କଥାରୁ ତାଙ୍କର ଚିହ୍ନିଲେ ନୃପତି
ଏକ୍କ ନାମ 'ଶକୁନ୍ତଳା',
ଥିଲେ 'ଅନସୂୟା' 'ପ୍ରିୟମ୍ବଦା' ନାମ
ଅନ୍ୟ ଯେ ବେନି ଅବଳା ।

ଶକୁନ୍ତଳା କଣ୍ବ- ଦୁହିତା, ଅପର
ବେନି ତାର ସହଚରୀ,
ଶକୁନ୍ତଳା ବର୍ଣ୍ଣ- ଥିଲା ବେନି ପକ୍ଷ
ମଧ୍ୟରେ ପ୍ରଦୀପ ପରି ।

ତା' ରୂପ-ମାଧୁରୀ କଲା ଅଧିକାର
ହୃଦ-ରାଜ୍ୟ ରାଜାଙ୍କର,
ଅନ୍ତଃପୁର-ନାରୀ- ରୂପ-ଗୁଣ ତାରୁ
ଯୋଡ଼ିଲା ନର-ପତଙ୍କ ।

ଭାଙ୍ଗି ଦେଲା ବନ- ବସୁରା ଉଦ୍ୟାନ—
ଲଭକାର ଅଭିମାନ,
ଗୋଲାପ କଣ୍ଟକ- ବନବାସୀ ବୋଲି
ବାସଙ୍ଗ କି ତା ସମାନ ?

ସୁନ୍ଦରୀ-ଦର୍ଶନ ଶୁଭ-ଅବସର
ପାଇ ଅବିଳମ୍ବେ ମନ
ଆନନ୍ଦ ବନ୍ଧୁର ଯୁଗ ଯୁଗପତ
କରିନେଲା ଆଲିଙ୍ଗନ ।

ସୁକୁମାରୀ କକ୍ଷ- କଳଶ ସନ୍ଧର
କରାଇଲା ଆମନ୍ତ୍ରଣ
ଶମ୍ପା-ସହଚର- କୁଳଶ, ନଳିନୀ-
ନୀଡ଼-କଣ୍ଟକ ସ୍ମରଣ ।

ମୃଦୁ ମନୋହର କଳେବରେ ଦେଖି
ବଲ୍ଲଳର ପରଛନ୍ଦ
କହିଲେ, "ଆହା ରାଜଲକ୍ଷ୍ମୀ ତନୁ
ସମର ଚନ୍ଦ୍ରା ଆସ୍ପଦ ।

ତୃଷାହତ ହୋଇ ପଡ଼ୁଛି ତଥାପି
ଲଳନା-ଲାବଣ୍ୟ-ପ୍ରଭା,
ଯଥା ଶିବ-ଜଟ- ଚନ୍ଦ୍ରକା, ଶୈବାଳ-
ବେଷ୍ଟିତ-ପଦ୍ମିନୀ ଆଭା ।

କଳଙ୍କ ହିଁ ଥାଇ          କଳାକର-କୋଳେ
          କରଇ ନେତ୍ର ରଞ୍ଜନ,
ଶୈବଳସୁନ୍ଦର          ଅଙ୍କୁ ଜଗତେ
          ନ ହୁଏ ରୂପ-ମଣ୍ଡନ ?"
ଯଜ୍ଞବନ-ପ୍ରାନ୍ତେ          ସମ୍ଫୁଲ୍ଲ-ମୁଖ-
          ମଣ୍ଡଳର ସ୍ୱେଦକଣ
ପୁଞ୍ଛି ବସୁଥିଲେ,          "ନବ-ବିକଶିତ-
          କମଳେ ହିମ ପତନ ।
ଏ କଠିନ କର୍ମ          ଦେଲେ କୁମାରୀକ
          ମୁନି କି ବିଚାରି ମନେ,
ଯା' ଦେହକୁ          ଲଗାଇଅଛନ୍ତି
          ବାକଳ-ଗଣ୍ଠି ବନ୍ଧନେ ।
ତପୋବନେ ଏହା          ଅସମ୍ଭବ କଥା
          ଜଗତେ ସମ୍ଭବ ପାରେ,
ଶମୀ ତରୁ ଏହା          କାଟୁଛନ୍ତି ମୁନି
          ନୀଳୋତ୍ପଳ-ଦଳ-ଧାରେ ।"
ସଖୀଦ୍ୱୟ ଆସି          ସଲିଲ ଢାଳନ୍ତେ
          ବାଳ-ତରୁ-ଆଲବାଳେ,
ଶକୁନ୍ତଳା ଆସି          ସହକାର ତଳେ
          ଉପଗତ ଏହୁକାଳେ ।

ଭୂମି ତଳେ ଥୋଇ ସୁଢ଼ଳ ଶ୍ରୀଅଙ୍ଗ
ପଲଗାଇ ଦେଲେ ଛୁଡ଼ା
ଲତା ଛୁଡ଼େ ଲାଜ- ପୁର-ସ୍ୱର୍ଣ୍ଣ-କଣ୍ଟୀ-
ଛୁବର କରଇ କ୍ରୀଡ଼ା ।
ପାଣି ପଦ୍ମଯୁଗ- ପଲ୍ଲବ ଯତ୍ନରେ
ଲଗ ଗ୍ରୀବା-ପୃଷ୍ଠ—ଲଟି,
ଚାହା ଗଢ଼ା ସ୍ୱର୍ଣ୍ଣ- ଶିଳ୍ପୀ ହସ୍ତେ, ଏହା
ଭବଶିଳ୍ପୀ ଛନ୍ଦ ଗଢ଼ି ।

ଭାବନ୍ତି ନରେଶ, "ଏ ଶୋଭନ କି ନା
ନର-ଭାଗ୍ୟ-ଉପବନେ,
ଅବା ଚିରନ୍ତନ ଥିବ ତପୋବନ-
ସୌନ୍ଦର୍ଯ୍ୟ ସମ୍ଭାବନେ ।

ଲତା ନୁହେ ବାମା ବିଧାତା-ମାନସ-
ଲତା-ବୃନ୍ତ-ଶୋଭୀ ଫୁଲ,
ଭାଗ୍ୟଦେବୀ ଶିର- ଯୋଗ୍ୟ ଏ ଭୂଷଣ
ଫୁଲ ଅମୂଲ୍ୟ ଅତୁଲ୍ୟ ।

ଯାହା ପୂଜାପାଇଁ ଆଜ ଏ କୁସୁମ,
ଧନ୍ୟ ମୋ' ନେତ୍ର-ଭ୍ରମର,
ଲଭେ ତା' ମାଧୁରୀ- ସୁଧା ପାନ କରି
ଯାଇ ଶୁଭ ଅବସର ।"

ସୁନ୍ଦରୀ ଶୃଙ୍ଖଳ    ସହକାର-ସଙ୍ଗୀ'
ନଆଳୀ-ଲତାକୁ ଥରେ,
ଛନ୍ଦବନ୍ଧ ପରେ    ପଡ଼ିଛୁ ନଆଳୀ
ସୁନ୍ଦରୀ ନେତ୍ରପଥରେ ।
ନଆଳୀ ପ୍ରଶାଖା    ମୂଳମାନଙ୍କରେ
ହୋଇଥାଏ ପୁଷ୍ପକଢ଼ି,
କେତେ କଢ଼ି ଗର୍ଭେ    ଆବରଣ ଭେଦ
ବାହାରକୁ ଥାନ୍ତି ବଢ଼ି ।
କେତେ ଅବା ତହୁଁ    ରଜପୂର୍ଣ୍ଣ ଅଙ୍ଗେ
ହୋଇଣ ବିକାଶୋନ୍ମୁଖ
କେବଳ ପ୍ରତୀକ୍ଷା    କରୁଥାନ୍ତି ଶୁଭ—
ମୁହୂର୍ତ୍ତ ରଜନୀ-ମୁଖ ।

ଦୁଇ ଚାରି ଗୋଟି    ବିକଶିତ ହୋଇ
ଲତାଜାଲେ ଥାନ୍ତି ପଶି,
ଦୁଇ ଚାରି ଗୋଟି    ଭୃଙ୍ଗ ଉପଦ୍ରବେ
ତଳେ ଶୋଇଥାନ୍ତି ଝଡ଼ି ।
ସ୍ୱହସ୍ତବର୍ଦ୍ଧିତ    ନଆଳୀର ଦେଖି
ନବପୁଷ୍ପ ଉଦ୍ଗମନ,
ଆନନ୍ଦପ୍ରଫୁଲ୍ଲ    ହେଲା ଶକୁନ୍ତଳା
ନୟନ ସହିତ ମନ'।

ନ ଫୁଟି ଫୁଟିଲା ପଦ୍ମ ହୋଇଗଲା
ପ୍ରସନ୍ନ-ବଦନେ ହାସ,
ରହୁ ନ ପାରଲେ ନ କହ ସେ କଥା
ସଖୀଙ୍କଠାରେ ପ୍ରକାଶ ।
ଆନନ୍ଦଗଦ୍ଗଦେ ବୋଇଲେ ସଖୀଙ୍କି,
"ଆସ ଆସ ବେଗେ ମିତ,
ଦେଖ ମୋ ନଅଳୀ ହୋଇ ଯାଉଅଛୁ
ଅଜ ନବକୁସୁମିତ ।"
ଅସ୍ଫୁଟ ମଧୁର ହାସ ମିଶିଥାଏ
କଳବଣ୍ଠୀନା ବଚନେ,
ଇକ୍ଷୁରସ ମଧ୍ୟେ ନ ଫୁଟି ଯେସନ
ଶର୍କରା ଥାଏ ଗୋପନେ ।
ବାମା ଆମନ୍ତ୍ରଣେ 'କାହିଁ କାହିଁ' ବୋଲି
ଆସି ସହଚରୀବୃନ୍ଦ,
ଦେଖି ଆରମ୍ଭିଲେ ଚଞ୍ଚଳଭ ଭୃଙ୍ଗ
ନଅଳୀ-ପ୍ରଶଂସାରମ୍ଭ ।
କେ ବୋଇଲା ଦେଖି, "ଏ କଣ୍ଢିଟି ଆଜ
ଫୁଟିବ ପରେ ସଜନ",
ଅପରେ ବୋଇଲା, "ଏହୁ କୁସୁମଟି
ଫୁଟିଲୁ ଗତ ରଜନୀ ।"

ପ୍ରିୟମ୍ବଦା ସଖୀ    ବୋଇଲା, "ସଙ୍ଗାତ,
ହୋଇଛି ଶୁଭସମୟ,
ସହକାର ସଙ୍ଗେ    ବନ-ତୋଷିଣୀର
କରିଦିଅ ପରିଣୟ ।"

ଶକୁନ୍ତଳା ହସି    ବୋଇଲେ, "ସଖି—
ସତ ମୋତେ ଜଣା ନାହିଁ,
ଜାଣିଥିଲେ ତୁମ୍ଭେ    ପୁରୋହିତ ହୋଇ
ସେ ବିଧି ଦିଅ ବତାଇ ।"

ପ୍ରିୟମ୍ବଦା ସଖୀ    ବୋଇଲା, "କୁମାରି,
କହିଥାଅ ଯେବେ ସତ୍ୟ,
ତୁମ୍ଭ ପରିଣୟ—    ପୁରୋଧା ହେବାକୁ
ଅକ୍ଷୁଣ୍ଣ ଥିବ ମୋ' ସ୍ୱତ୍ୱ ।"

ସଲଜ୍ଜବଦନେ    ବୋଇଲେ ଶ୍ରୀମତୀ,
"କେତେ କଥା ତୁମ୍ଭେ ଜାଣ,
ଉପସ୍ଥିତ କାର୍ଯ୍ୟ    ନ କର ପ୍ରଥମେ
ଭବିଷ୍ୟତ କଥା ଆଣ ।"

ଏହା ଶୁଣି ବାଳା-    ପରିଣୟ-ଆଶା
ଅଙ୍କୁରିଲା ନୃପ ମନେ,
ସେ ଆଶା-ଲତିକା    ପଲ୍ଲବିତ ହେଲା
ଦକ୍ଷିଣ ବାହୁ ସ୍ପନ୍ଦନେ ।

ମନ ପ୍ରତି ରାଜା     ବିବେକ ବୋଇଲା
'ଯଥେଷ୍ଟ-ନିଷ୍ଠୁ-ଭର୍ତ୍ସନେ,
"ନବ ସ୍ୱାଧୀନତା     ଏ କି ଅଜ ତୋର
ପର ଦ୍ରବ୍ୟ ପ୍ରଲୋଭନେ ?"
ମନ ବୋଲେ, "ଏ ତ     ଅନ୍ତର-ଗରବ—
ଅନଧିକୃତ-ରତନ,
ରାଜତ୍ୟାଜ୍ୟ ନୃତ୍ୟେ     ଦେଖିଲଠାରେ ତହିଁ
ପ୍ରଥମ-ଦୃଷ୍ଟି-ପତନ ।"
ବିବେକ ବୋଲଇ,     "ଋଷିନନ୍ଦିନୀ ଏ
କୂପ-ପ୍ରତିବିମ୍ବ-ଭାନୁ,
ଗନ-ମଣିଙ୍କାରେ     ଲୁବ୍ଧ-ମୁଗ୍ଧ-ଜନ
ଝସାଇଲେ ଯିବ ମାରି ।"
ପ୍ରିୟମ୍ବଦା ତେଣେ     ବୋଇଲା, "ସୁନ୍ଦରି,
ଏତ ରାଜ-ପୁରୋହିତ
କହିବ କି ମୋତେ     ରାଜବର-ପ୍ରେମ—
ଲୋଲୁପ କି ତୋ' ଚଳ-ଚିତ୍ତ ?"
ଭାବିଲେ ନରେଶ,     "ଗଗନ-ବିହାରୀ
କଳ୍ପା ମଣୁଥିଲି ଯାହା,
ସ୍ୱର୍ଗ-ଚ୍ୟୁତ-ମଧୁ—     ଜ୍ୟୋତି-ପୁଣ୍ୟରାଶି
ଧର ଦେଖିଲାଣି ତାହା ।

ରାଜ-ଭୃଙ୍ଗ-ସେବ୍ୟ—  ସମ୍ମୁଖ ରମା ଏ
କଥାରୁ ଯାଉଛୁ ଜଣା,
କାନ୍ତ ନ ଜାଣିଲ  ଜନ-ମନୋଲୋଭା
କି କାରଣେ ବସ୍ତ୍ରନଳା ।

ମୁନି କହୁଛନ୍ତି,'  ଆଶ୍ରମେ ଅଛନ୍ତି
ମୁନି-ସୁତା ଶକୁନ୍ତଳା,
ସଖୀ ବାକ୍ୟ କହେ,  ରାଜବରଣୀୟା
ସୁକୁମାରୀ ସୁକୁନ୍ତଳା ।"

କୌତୂହଳ-ରଥ  ଚଢେ ରାଜା ମନ
ଏ ରହୋବ୍ୟୂହ ଦେଖନେ,
କାନ୍ତ ରହୁଯାଏ  କୌତୁକ ଦର୍ଶନ
ପ୍ରଲୋଭର ଜବେଦନେ ।

ଭାବେ, "ଭାଗ୍ୟେ ଯଦି  ନାହିଁ ଏହୁ ସୁଖ—
ସ୍ପର୍ଶମଣି-ରୂପ-ନିଧି,
ଝୁରିବ ମାଧବା—  ପାଇଁ ଅଜାତକ
ଦେଖାଇଲୁ ଅକ ବଧି ।

ଦେଖୁଅଛୁ ଯାହା  ସତ୍ୟ ନା ସ୍ୱପନ
ଯିବ କି ସହସା ଭାଙ୍ଗି,
ସୁଖ-ସ୍ୱପ୍ନ ଆଜି  ଦେଖି ନଂ ଧାରବ
ଦେବ-ଦୁର୍ଲଭ-ଶୋଭନୀ ।

ଦୃଷ୍ଟି-ସିଂହାସନ          ତେଜି ଯିବ ଯେବେ
ଏ ମୋ’ ହୃଦ-ସ୍ୱର୍ଗ-ମଣି,
ଦୃଷ୍ଟ ସ୍ମୃତି ପ୍ରାଣ—          ପ୍ରଜାଙ୍କୁ ସହଜେ
କଳ୍ପନେ ସ୍ଥାପିବ ଆଣି ।”

ଅନସୂୟା ତେଣେ          ବୋଲେ, “ ପ୍ରିୟମ୍ବଦେ
ଏଥି ତୋ ପୁରୋଧାପଣ
ନ ଯାଇବ ରହ,          ଅଛନ୍ତି ନଅଳୀ-
ସମାଜର ଦ୍ୱିଜଗଣ ।

ଭାଗ୍ୟ-ବଶତଃ—          ସ୍ମୃତି-ଚନ୍ଦ୍ରାତପ
ଲମ୍ବିତ ହେବ ଉପରେ,
ମନ୍ତ୍ରାଧରଗଣ          ରୌଦ୍ରରେ ରହିବେ
ପ୍ରଦୀପ୍ତ-ଦନ୍ତୁର-କରେ ।

ପୁଷ୍ପ ଥିବ ବାଣ          ବଂଶ-ବନେ ଉଡୁ-
ଥିବ ଉଲ୍କାରୂପେ ନଭେ,
ଫୁଲଫୁଲି ପଡୁ-          ଥିବ ମକ୍ଷୀବନେ
ମଧୁପ-ମଧୁର-ରବେ ।

ବୃନ୍ଦାର ଟେଣ୍ଟୋର          କରୁଥିବେ ମୋଦେ
ମଙ୍ଗଳ-ସଙ୍ଗୀତ ଗାନ,
ସେକାଳେ ନଅଳୀ-          ଜର ବୃତ-କରେ
ସମର୍ପିବେ ପଦମାନ ।”

ଅନସୂୟା ବାକ୍ୟେ          ଶୁଣି ଶକୁନ୍ତଳା
ବୋଇଲେ, "କହୁଛ ସତ,"
କୃପାଦୃଷ୍ଟି ତୋର          ସଖୀଦ୍ୱୟ ଗଲେ
କାର୍ଯ୍ୟେ ଚଳି ମନୋରଥ ।
ଶକୁନ୍ତଳା ଜଳ          ସିଞ୍ଚି ଆରମ୍ଭିଲେ
ନବମାଳିକାର ମୂଳେ,
ମଧୁକର ଏକ          ଉଡ଼ିଲା ଏକାଳେ
ଯେ ଥିଲା ନଅଳୀ ଫୁଲେ ।
ଉଡ଼ି ପୁଣି ବସି          ଜପେ ବାରମ୍ବାର
ସୁନ୍ଦରୀ-ମୁଖ-ମଣ୍ଡଳେ,
ବାତାହତ ହେଲେ          ଉଡ଼ୁଥାଏ ପୁଣି
ମୂର୍ଦ୍ଧ୍ନ ଊର୍ଦ୍ଧ୍ୱେ ଚଳେ ।
ଦୀର୍ଘ ଗୁଞ୍ଜନରେ          କେତେବେଳେ ଥରେ
କରଇ ପ୍ରଦକ୍ଷିଣ,
ଯହିଁ ଯାଏ ତହିଁ          ଥାଏ ଚପଳାର
ନୟନ ପଲକହୀନ ।
ଡର ଲୁଳ ଲଇଁ          ଉଠି ଚୁଲି କୁଞ୍ଚ
ତେଜ କଟି ଗ୍ରୀବା ଭଙ୍ଗି,
ଅଳ ତଳ ତଳ          ନର୍ତ୍ତକୀ ଭଙ୍ଗିରେ
ପଡ଼ଥାଏ ଚଳାପାଣି ।

ଏ ନୃତ୍ୟଦର୍ଶନ-          ଭାଗ୍ୟ ଲଭିବାକୁ
କେହୁ ତ ନ ଥିଲେ କତି,
ସୁରାଙ୍ଗନା ନୃତ୍ୟ          ନାରଦ ମଣନ୍ତେ
ଦେଖିଥିଲେ ସୁରପତି ।

ଇଚ୍ଛାବରହିତ          ସ୍ୱାର୍ଥବର୍ଜିତ
ତ୍ରିଦଶ-ବନିତା-ନାଟ,
ସାରଲ୍ୟ-ଶୋଭିତ          ଲାସ୍ୟ କେବେ କାହିଁ
ଦେଖିଥାନ୍ତି ସୁରରାଟ ?

ନ ପାରିଲେ ଦେଖି          ଅଣିମା-ପ୍ରଣୟ-
ଚଳଚଳ ଶବସ୍ଥାନ,
ଘନ-ପଲ୍ଲବିତ-          ତରୁ-ଅନ୍ତରାଳ
ରକ୍ଷା କଲା ତାଙ୍କ ମାନ ।

କେବଳ ହସ୍ତିନା-          ସାର୍ବଭୌମ ଗୃହେଁ
ହୋଇଗଲେ ପ୍ରମୂର୍ତ୍ତିଭୂତ,
ଦ୍ରବ ନ ଯାଇ ଯା          ପର କଲେ ହୃଦ
ଏ କଥା ଏଡ଼ା ଅଦ୍ଭୁତ ।

ଅଧୀରେ ସୁନ୍ଦରୀ          ସଖୀଙ୍କି ଡାକିଲା,
"ଆସ ଆସ ପ୍ରାଣମିତ,"
ସେ ଗମ୍ଭୀର ବାଣୀ          ହୋଇଗଲା ସେହୁ
ଲାସ୍ୟ-ସହଚର-ଗୀତ ।

ବନ ଦୁଇଧ୍ୱନ  ଉଠି ହେଲା ସେହ'
ରମ୍ୟ-ସ୍ୱର-ସହଚରୀ,
ଚନ୍ଦ୍ରଚୂଡ଼-ସୁଧା-  ମୋହନ ମନ୍ତ୍ରେ ବା
ମନ୍ତ୍ରି ଦେଲା ହର-ଅର ?
ସଜାଇ ଥିଲା ଯା  ବୀଣା କାମ-ବଧୂ
ବଜାଇ ଦେଲା ଝଙ୍କାର,
ହଜାଇଲେ ରାଜା  ଧୈର୍ଯ୍ୟ ମଣି ତା'
କୁସୁମ-ଧନୁ-ଟଙ୍କାର ।
ପୁଣି ଡାକ ଦେଲା  "ଆସ ସଖି ଥରେ,
ଦୁଷ୍ଟସବ ମଧୁବ୍ରତ
ଜାଳିରୁ ଆସି  ବାରଣ ନ ମାନ
କରୁଛି ମୋତେ ବ୍ୟସ୍ତ ।"
ଜାଣି ନ ଜାଣିଲା  ପର ଚିସ୍ପୃହା
'ଉଦ୍ଧରି ବର ବ୍ୟଞ୍ଜନା,
"ପୁରୁବଂଶ୍ୟ ପୁଣି  ତପୋବନ ମଧ୍ୟେ
* ମଧୁବ୍ରତର ଗଞ୍ଜନା !
ସବଶାଳ ଅମ୍ଭ  ଜାଳୀ ମଣ୍ଡିତ
ଅଳୀଏ ଥାଉଁ ଗହଣେ,

* ମଧୁବ୍ରତ—ଭ୍ରମର ଓ ମହୁଆ ।

କେଉଁ ଦୁର୍ଜନ ସେ, ଦୁଷ୍ମନ୍ତ-ପ୍ରତାପ
ପଡ଼ି ନାହିଁ ତା କର୍ଣ୍ଣେ ?"

ପାଇ ଅବସର ନୃପତି ସତ୍ୱର
ଯାଇ ଶକୁନ୍ତଳାପାଶ
ବୋଇଲେ, "କି ହେଲା, କହ ଲୋ ସୁଶୀଳେ,
କେଉଁ ଖଳ ଦିଏ ତାପ ?

ଭୟ ନାହିଁ ଭୟ ନାହିଁ ଶକୁନ୍ତଳେ,
ପୌରବ ନୃପତି ଥିଲେ,
ଅବଳା ଅରକ୍ଷ- ଉପଦ୍ରବ କେହୁ
କାହିଁକି ସହିବେ ଛଳେ ?"

ଦେଖିଲୁ ସୁନ୍ଦରୀ ସମ୍ମୁଖେ ଅପୂର୍ବ-
ସୁନ୍ଦର ଯୁବକବର,
ଅଙ୍ଗବନ୍ତ କି ସେ ଅନଙ୍ଗ ଅଥବା
ନରରୂପୀ ସୁଧାକର ?

ବଦନ-ମାଧୁରି ଥରେ ଦୃଷ୍ଟି ତାଙ୍କ
ମୁଗ୍ଧ କଲା ଅବନତ,
ଲଜକୁଳୀ ଲତା- ଅଙ୍ଗେ କି ପରଶ
ଲାଗିଗଲା ତାହା ହସ୍ତ ?

କି କହିବ କିସ କହିବ କହନ୍ତି
ଛିର ନ ପାରିଲା ମନେ,

ବିସ୍ମୟ-ଜୀମୂତ ବ୍ୟାପି ଗଲା ତାର
ସହସା ହୃଦ-ଗଗନେ ।

ଲଜ୍ଜା-ସହଚରୀ ସଜାଡିଲେ ବାଳା-
ଶରୀର-ବ୍ୟସ୍ତ-ବଲ୍କଳ,
ନମ୍ରନୟୁଗଳ ରହିଲା ନୃପତି-
ଚରଣ-ଦରଶେ କେବଳ ।

ମଣ୍ଡିଲା କପୋଳ ତଳେ ରଙ୍ଗ-ପାଦ
ସମୁଜ୍ଜ୍ୱଳ ନଖପଂକ୍ତି,
ମୁଦେ ମୁକ୍ତିଭକ୍ଷୀ ବନ୍ଧୁଜୀବାଧର-
କୁନ୍ଦ-ଦନ୍ତୀ-ବଦ୍ଧମତି ।

ନୀରବେ ନଷ୍ଟଳେ ଟିକେ ହେଉଁ ଯେଣେ
ସଖୀଏ ପଶିଲେ ମନେ,
ତାଙ୍କ ପ୍ରତି ଚାହିଁ ନ ଚାହିଁ ସେ ସୁଧେଁ
ନୃପଗଣ ତତକ୍ଷଣେ ।

ସଖୀଦ୍ୱୟ ଦେଖି ଯୁବା-ମୂର୍ତ୍ତି ଶାନ୍ତ
ଗମ୍ଭୀର ପ୍ରତିଭାନ୍ୱିତ,
"ସତେ କି ଦୁଷ୍ମନ୍ତ ?" ବୋଲି ଭାବି ମନେ
ମନେ ହେଲେ ଅଚମ୍ଭିତ ।

ମଧୁରେ ବୋଇଲେ, "ତପୋବନେ ଅମ୍ଭ
ନାହିଁ ଅନ୍ୟ ବନ୍ଧୁ ଭୟ,

କରୁଥିଲ ଆମ୍ଭ ପ୍ରିୟସଖୀ ପ୍ରତି
ଉପଦ୍ରବ ମଧୁକର ।"

ସମ୍ଭ୍ରମେ ବନସ୍ଥ— ବାକ୍ୟେ ପ୍ରିୟମ୍ବଦା
ଭାବ ଚାହିଁ ଚତୁରଳ
ପ୍ରସାରିତ କର- ଯୁଗେ ଦେଖାଇଲା
ଆସନ ଚକ୍ରଣାପଳ ।

ବସନ୍ତେ ନରେଶ ପାଦ୍ୟ ଅର୍ଘ୍ୟପାଇଁ
ସଖୀଙ୍କି କଲା ଇଙ୍ଗିତ,
ଜାଣି ତା ନୃପତି ବୋଇଲେ, "ଅତିଥି
ହୋଇଅଛୁ ସୁସେବିତ ।

"ମଧୁମୟ ପ୍ରିୟ ବ୍ୟବହାର ତୁମ୍ଭ
କରିଅଛୁ ଆପ୍ୟାୟିତ,
କ୍ଷଣେ ତୁମ୍ଭେ ସ୍ଥିରେ ବସିଲେ ହେବ ମୋ'
ଆନନ୍ଦ ଶତଗୁଣିତ ।"

ଅତିଥିତୋଷଣ ଉପରୋଧ ଛଳେ
ତୋଷେ ତରୁଣୀଏ ରଙ୍ଗ,
"ତୁ ବସ, ତୁ ବସ" ବୋଲି ଇଙ୍ଗିତରେ
ହେଲେ ଥରେ କହାକହି ।

ବସିଲେ ଜନକେ ପରସ୍ପରେ ହସ୍ତ
ଗୃପି ଗୃପବଳ ଛଳେ,

ଏ ରହସ୍ୟ ହେତୁ-   ଥିଏ ସେହେ ନୃପ
ଅଲକ୍ଷରେ ଚଳିଗଲେ ।
ନୃପତି କୌତୁକ   ଦେଖୁଥାନ୍ତି ଜାଣି
ନ ଜାଣିଲା ପରି ବସି,
ତରୁଣୀ-ମୁକୁଳ-   ଅସ୍ଫୁଟ-ମଧୁର-
ଗୃହପଙ୍କ୍ତିରେ ତାଙ୍କ ରହି ।
ମନ୍ତ୍ରୀକୁମାରଙ୍କି   କୁଶଳ ବାରତା
ପଚାରନ୍ତେ ନୃପବର,
"ଭବଦୀୟ କୃପା-   ବଳେ ସର୍ବଶୁଭ"
ମନ୍ତ୍ରୀଏ ଦେଲେ ଉତ୍ତର ।
ନରେଶ ବୋଇଲେ   "ତୁମ୍ଭମାନଙ୍କର
ବଦନର ପ୍ରଫୁଲ୍ଲତା
କହୁ ଦେଉଅଛି   ପ୍ରଥମରେ ତପୋ-
ବନର ଶୁଭ-ବାରତା ।
ପୁଣି ଜନଙ୍କର   ଯେମ ରୂପ ବସ୍ତ୍ର
ଅମାନୁଷିକ ବ୍ୟବହାର
ଦିଶୁଅଛି ଏହୁ   ପଶେ ବନକୁ
ମୂର୍ତ୍ତିମନ୍ତ ପ୍ରେମାଗାର ।"
ଯନ୍ତ୍ରବାପାଇଁ   ମନୋହର-ବସ୍ତୁ
ଅଣାଇଲେ ଦେବରସ୍ତୁ ·

ସିନ୍ଧୁ-ତୀର ପର   ଉଠି ପଡ଼ୁଥାଏ
ବାଳାଙ୍କ ସିନ୍ଧୁ ହୃଦୟ ।
ଅନସୂୟା ସଙ୍ଗେ   ପ୍ରିୟମ୍ବଦାଙ୍କର
ଲାଗିଥାଏ ଠସ୍ୱଠଣ,
ବିଳମ୍ବ ନ ସହି   ପ୍ରିୟମ୍ବଦା ତହିଁ
ପୁଚ୍ଛିଲା ଆଗ୍ରହ ଭର ।
"ଧୀରମଣି କେଉଁ   ବଂଶ-ଭୂଷା, କେଉଁ
ରାଜ୍ୟ ତବ ଅସୁନ୍ଦର
ଏତେ ଅନୁରାଗେ   କଲେ ସୁଶୋଭିତ
ଏ ବନେ ଅର୍ପି ପଯ୍ୟନ୍ତ ?"
ବାଳା ବାକ୍ୟେ ନୃପ   ପ୍ରତିବାଣୀ ଦେଲେ
"ପୁରୁ ବଂଶେ ମୋର ଜନ୍ମ,
ଦୁର୍ଦ୍ଦମ-ଦମନ   ପ୍ରଜା-ରଞ୍ଜନ
ବଂଶଗତ କୁଳ-ଧର୍ମ ।
ମୃଗୟା-ବିହାର   ମଧ୍ୟେ ତପୋବନ
ଦରଶନେ ହେଲା ମନ,
ତପୋବନେ ତୁମ୍ଭ   ରାଜ-ନାମ ଶୁଣି
କରଅଛୁଁ ଆଗମନ ।
ଦେଖୁଅଛୁଁ ସଖୀ-   ଦ୍ୱୟ ତୁମ୍ଭେ ଏହି
ତପୋବନ-ଅଳଙ୍କାର,

ତପସ୍ୟାର ଫଳ— ରୂପିଣୀଙ୍କ ପୁଣି
ତପସ୍ୱିନୀ ବ୍ୟବହାର ।
ବନ୍ଧୁ ସହିତ କୌତୂହଳ ଅତି
ଜାତ ହେଉଛି 'ମୋ' ମନେ,
ତବ ବ୍ରହ୍ମଚର୍ଯ୍ୟ' କଣ୍ୱ ମହାଋଷି
ପୁତ୍ରୀ ପାଇଲେ କେମନେ ?"
ଶୁଣି ପ୍ରିୟମ୍ବଦା କହିଲା, "ଏକଦା
କୌଶିକ ତପୋଧନ
କଠୋର ତପସ୍ୟା କରିବାର ଦେଖି
ଶଙ୍କିଲେ ମେଘ-ବାହନ ।

ତପୋଧନଙ୍କର ତପୋଧନ ହର
ନେବାପାଇଁ କଉଶଳେ
ମଘବା ପ୍ରେରଣେ ମେନକା ସୁନ୍ଦରୀ
ଆସିଲେ ଅବନୀତଳେ ।
ତାଙ୍କ ଯେବେ ବଳେ ବ୍ରହ୍ମର୍ଷିପ୍ରବର
ଅମୋଘ ତେଜଃ କ୍ଷେପଣ,
ଶକୁନ୍ତଳା ନବ- ରମଣୀୟ ରତ୍ନ-
ଲତା ତହୁଁ ଉତପନ୍ନ ।
ତାତ କଣ୍ୱଙ୍କର ଯତନେ ଏ ବନେ
ହୋଇଅଛି ପ୍ରବର୍ଦ୍ଧିତ,

ମହର୍ଷି ଦେଖିଲେ ଅନୁରୂପ ପାତ୍ରେ
ବାଳା ହେବ ସମର୍ପିତ ।"

ସେ ବାଣୀ-ବସନ୍ତେ ନୃପ-ଆଶା-ତରୁ
ହୋଇଗଲା କୁସୁମିତ,
ଭାବିଲେ ରହୁ ସେ ହେଉଥିଲା ଯାହା
ଅନଳ-ଖଣ୍ଡ ପ୍ରଘାତ ।

ସ୍ୱର୍ଗୀୟ ଲତାର ନବ କୁସୁମ ଏ
ସ୍ୱର୍ଗୀୟ ସୁଷମାନ୍ୱିତ,
ସ୍ୱର୍ଗୀୟ ସୌରଭ ସ୍ୱର୍ଗୀୟ ମାର୍ଦ୍ଦବ
ଅନାଘ୍ରାତ ଅଚୁମ୍ବିତ ।

ନୃପ-ମୁଖେ ଦିଏ କଟାକ୍ଷ ତରୁଣୀ
ନୃପ-ଦୃଷ୍ଟି ଥିଲେ ଆନେ,
ଆବର୍ତ୍ତିଲେ ନୃପ- ଚକ୍ଷୁ ତାର ଦଗେ
ବେଗେ ଅପସାରି ଆଣେ ।

ଲଜ୍ଜାବଶେ ଉଠି- ଗଲେ ହେବ ବୋଲି
ଅତିଥିଙ୍କ ଅବମାନ,
ଚମକ-ଝଲୁଣୀ ପ୍ରାୟ ବସିଥାଏ
ଯେତ୍ତେ ମନ ଚଳ ଆନ ।

ସପ୍ତପର୍ଣ୍ଣ ପତ୍ର- ଛିଣ୍ଡି ଗଣି ଗଣି
ନତ କରୁଥାଏ ମୁଖ,

ମଧ୍ୟେ ଥରେ ଥରେ        ନୃପଙ୍କ ଅପାଙ୍ଗେ
ଭୁଞ୍ଜି ଲଜ୍ଜିଆ ସୁଖ ।
ନୃପ ଦେଖୁଥାନ୍ତି        ପୁନଃ ପୁନଃ ତାର
ନବ୍ୟ-ପ୍ରଭା-ପୂର୍ଣ୍ଣ-ମୁଖ,
ମୌନ ରହୁଥାନ୍ତି        ଆଳାପନ ତେଜି
ବଦନ-ଦର୍ଶନ ମୁଖ୍ୟ ।
ଅମଳ ଅଳକ-        ମଣ୍ଡିତ ଲଲାଟ
ସୀମନ୍ତ ରେଖା ସରଳ,
ତଳ ଅଳି ଭୃଙ୍ଗ-        ଶୋଭିତ ବାମାର
ଗଣ୍ଡ ଶତଦଳ ଦଳ ।
ସୁନୀଳ ନବୀନ-        ଭ୍ରୂଲତା-ସରଣି
କପାଳ କପୋଳ-ସୀମା,
ପକ୍ଷ୍ମ ବିଶୋଭିତ        ନୟନ ସନ୍ତତ
ଦର୍ଶାଏ ରଙ୍ଗେ ଭଙ୍ଗିମା ।
ସୁଗଠିତ ନାସା        ବର୍ତ୍ତୁଳ ଚିବୁକ
ମନୋହର ଓଷ୍ଠାଧର
ଗ୍ରୀବା ଶୋଭରେ        ସୁଷମା ଲଭାବେ
ଲୁଟିଥାନ୍ତି ପରସ୍ପର ।
ଶରଚ୍ଚନ୍ଦ୍ରାଭ        ମୁଖ-ଶୋଭା-ସ୍ରୋତେ
ଭାସିବାରୁ ନୃପମନ

ସୀମା ପ୍ରାନ୍ତେ ଥାଇ                ଉଭୟ ଦଳଙ୍କୁ
            କରୁଥାନ୍ତି ଅକ୍ରମଣ ।
ନୃପଙ୍କ-ନୟନ-                ଉଚ୍ଛୁଳିତ ଜଳେ
            ଶୋଭସ୍ୱସି ଟଣାଟଣି,
ନୃପ-ନେତ୍ର ଦେଲା                ସେ ଶୋକ-ସାଗର-
            ତରଙ୍ଗେ କ୍ଷୁଦ୍ର ତରଣୀ ।
ଥରେ ଥରେ ନିଶା-                ମିଶି ହୋଇଯାଏ
            ଦେବଙ୍କର ଗୃହ ନେତ୍ର,
ଅଲୋକିତ କରେ                ଚମକାଇ ପ୍ରେମ-
            ସୌଦାମିନୀ ଦୃଢ଼-ସ୍ନେହ ।
ଦେଖିବାକୁ ଅଙ୍ଗ-                ଲାବଣ୍ୟ ନୃପଙ୍କୁ
            ନ ମିଳଇ ଅବସର,
ତନୁ ନତମୁଖୀ                ବାମା ଦେଖୁଥାଏ
            ତାହାଙ୍କ ଗୁରୁ ପଦ୍ମର ।
ଲାଗିଥାଏ ଯାହା                ପାଦରେ ଅଶ୍ରାନ୍ତ-
            ପଦର-ପଦ୍ମ-ଧୂଳି,
ଧୋଇଦେଇ ଯୋଚ୍ଛ                ଦେବା ପାଇଁ କରୁ-
            ଥାଏ ତରୁଣୀ-ମଣ୍ଡଳ ।
ଯେବା ଜଳ ମନେ                ମସ୍ତକେ ଢାଳଇ
            ଦେଇ ଅଭକ୍ତି ସନ୍ତାର

କରନ୍ତୁ, କରନ୍ତେ                ପକ୍ଷୀମାନେ ଯତ୍ନ
ଭର୍ତ୍ତି ପାଇଁ କଳାହାର !
ଏକାଳେ ସହସା                ବନଗଜ-ଭୟ
ଚହଳ ପଡ଼ିଲା ବନେ,
ଛୁଟିଲେ ତାପସେ                ଅନାଇ ସଭୟ-
ଭୟ-ଚଞ୍ଚଳ-ନୟନେ ।
ପୁଣି କେ କହଇ,                "ଦୁଷ୍ମନ୍ତ ନରେଶ
ମୃଗୟାବିହାରେ ଆସି
ତପୋବନ ମଧ୍ୟେ                ଦେଖ ରହନ୍ତି,
ସାବଧାନ ବନବାସି !
ଅଶ୍ୱ ଗଜ ଦଳ-                ବଳ ଅଗଣିତ
ବନେ ଆସିଲେଣି ମାତ୍ର,
ଭୟେ ଜୀବଗଣ                ଇତସ୍ତତଃ ହେଉ-
ଛନ୍ତି ତରବାର ଶତ ।
ଅଶ୍ୱଖୁରୋତ୍ଥିତ                ଧୂଳିପଟଳରେ
ଅନ୍ଧାର ହେଲାଣି ବନ,
ସେ ଧୂଳିପଟଳ                ବନ-ତରୁ ଲଙ୍ଘି
ଢାଙ୍କୁଛି ଦେଖ ଗଗନ ।"
ଦେଖୁଁ ଦେଖୁଁ ଏକ                କୁରଙ୍ଗଶାବକ
ଉଡ଼ି ଆସି ନଞ୍ଚଲେ

ଟିଏ ହୋଇଗଲା ଶକୁନ୍ତଳାଙ୍କର
ଲମ୍ବିତ ବଲ୍କଳାଞ୍ଚଳେ ।
ପୁଣି ଶୁଣାଗଲା, "ପ୍ରକାଣ୍ଡ ମାତଙ୍ଗ
ହେଉଅଛି ଭୟପ୍ରଦ,
ପ୍ରକାଣ୍ଡ ପାଦପ- ଶାଖା ଭାଙ୍ଗି ଭାଙ୍ଗି,
ଭଙ୍ଗିଗଲାଣି ତା ରଦ ।"

ସସମ୍ଭ୍ରମେ ନୃପ ଗାତ୍ରୋତ୍ଥାନ କରି
ଉଦ୍ୟତ ହେଲେ ଗମନେ,
କିନ୍ତୁ ତରୁଣୀଙ୍କ ସଙ୍ଗ ଛାଡ଼ିବାକୁ
ଖେଦ ହେଉଥାଏ ମନେ ।
ସଖୀଙ୍କି ବୋଇଲେ, "ଯାଉଛି ଦେଖିବି
କିରୂପେ ଅଟି କାରଣ
ତପୋବନେ ପଶି ଉପଦ୍ରବ କରେ,
କରିବି ତା ନିବାରଣ ।"

ଧୃଷ୍ଟତା ମୋ' ମନେ ନ ଧରିବ ବୋଲି
ଭରସା କରେ ମୋ' ମନ,
ତଥାପି ଅନ୍ତରେ ଅଛି ପୁଣି ତାହା
ଜଣାଇ ନେବ ମାର୍ଜନା ।"
ସଖୀଏ ବୋଇଲେ "ଅତିଥି ସତ୍କାର
ନ କରି ହେଉଛୁଁ ଦଣ୍ଡ୍ୟ,

ପୁନର୍ଦ୍ଦରଶନ ନ ଦେଲେ ଅର୍ଯ୍ୟେ ହେ
ହୃଦ ହେବ ଦୁଃଖପୂର୍ଣ୍ଣ ।"
ନୃପତି ବୋଇଲେ, "ଏପରି କଥାକୁ
ନ କହ ନ ଚିନ୍ତ ଆଉ,
ତୁମ୍ଭ ପ୍ରୀତିପୂର୍ଣ୍ଣ ବ୍ୟବହାର ଭୁଲି
ନ ପାରିବ ଜୀବ ଥାଉଁ ।
ନେଇ ଯାଉଅଛି ମୁନି-ତନୟାଙ୍କ
ନିକଟରୁ ପ୍ରୀତି-ଋଣ,
କହନ୍ତ ନ ଦେଲେ କିରୂପେ ବଣ୍ଟାଏ
କହନ୍ତୁ ତ ଦେଖି ଗୁଣ ?"
ଏହା କହି ହେମ— ଅଙ୍ଗୁରୀୟ କାଢ଼ି
ଅଙ୍ଗୁଳିରୁ ତରତରେ
ଶକୁନ୍ତଳା କର ଧରି ଅଙ୍ଗୁଳିରେ
ମଣ୍ଡିଦେଲେ ପ୍ରେମଭରେ ।
ଚଳିଲେ ନୃପତି ତପବନ କନ୍ତୁ
ପଛକୁ ଦୃଷ୍ଟିଭ ମନ,
ପ୍ରଧାବିତ ରଥ- ପଛକୁ ଉଡ଼ିଲ
ଦୁକୂଳ ଧ୍ୱଜ ଯେସନ ।
କର ସ୍ପରଶର ସୁଖରେ ପରାଣ
ହେଉଥାଏ ପୁଲକିତ,

ପୁଲକ ବଳରେ ବଳହିଁ ତାଙ୍କର
ହୋଇଗଲା ବିକଳିତ ।
ସଖୀଯୁଗ ଧରି ଶକୁନ୍ତଳା କର
ମୁଦ୍ରିକା କଲେ ଦର୍ଶନ,
"ଦୁଷ୍ମନ୍ତ" ନିବଦ୍ଧ ଧରିଅଛି ସେହି
ନବ-ପ୍ରେମ-ନିଦର୍ଶନ ।
ପରସ୍ପର ମୁଖ ଚାହାଁଚାହିଁ ହେଲେ
ଉଭୟେ ହୋଇ ଚକିତ,
ଶକୁନ୍ତଳା ପ୍ରାଣ ଅଛି କି ନା ଦେହେ
ନ ହେଲା ତାଙ୍କୁ ବିଦିତ ।
କି ଏକ ନବୀନ— ଭାବ-ସ୍ରୋତ ବେଗେ
ଭାସିଗଲା ତାର ପ୍ରାଣ,
ହସି ହସି "ଯାଉଁ କୁଟୀରକୁ" ବୋଲି
ସଖୀଏ କଲେ ପ୍ରୟାଣ ।
ସଖୀଙ୍କ ସଙ୍ଗରେ ଚାଲିବାକୁ ବାଳା
ପାଦରେ ନ ହେଲା ଶକ୍ତି,
ଚାହିଁ ଚାହିଁ ଦୁହିଁ ଅର୍ପିତ ହେଲା
ପୁନଶ୍ଚ ନୃପତି ପ୍ରତି ।
"କୁରୁବକ କଣ୍ଟା ଲାଗିଗଲା" ବୋଲି
ସଖୀଙ୍କି ଡାକିଲା ଛଳ,

ପ୍ରିୟମ୍ବଦା ବୋଲେ, "ପୁରୁଷଙ୍କ କଥା
ମୀନାକ୍ଷି ଗଲୁ କି ଗଲ ?"
ନ ଦେଖିଲେ ସଙ୍ଗ ବାଳା ନେବେ କନ୍ତୁ
ହୃଦରୁ ନ ହେଲେ ଦୂର,
ଜନ୍ମିଗଲା ବଳେ ଅବଳା ଜୀବନେ
ନବୀନ ପ୍ରଣୟାଙ୍କୁର ।



# ଦ୍ୱିତୀୟ ସର୍ଗ ।



## ପ୍ରଣୟ-ପଲ୍ଲବ ।



ଶିବିରେ ପହୁଞ୍ଚ ଯାଇଁ ନରବର
ଆଦେଶିଲେ ଭୃତ୍ୟଗଣେ,
"ଗଜ ବାଜ ସବୁ ନ ଛାଡ଼ ବାହନେ
ବନ୍ଧନେ ରଖ ଯତନେ ।"

ଶିବିରମଣ୍ଡପେ ବସି ଅଙ୍ଗୁରୀୟ-
ହୀନ ଅଙ୍ଗୁଳିକୁ ଚାହିଁ
ଭାବିଲେ, "ସୁନ୍ଦରୀ କରସ୍ପର୍ଶ ସୁଖ
ପାଇଲି ଅଙ୍ଗୁରୀପାଇଁ ।"

ବନ୍ଧୁ ଅଣିଥିଲେ ନଆଣି ଭୂଷଣ
ଗୋଟା ଗୃହ ଥିଲା କରେ,
ସୁନ୍ଦରୀମଣିର ପ୍ରିୟ ପୁଷ୍ପ ମଣି
ଆଘ୍ରାଣିଲେ ସ୍ନେହଭରେ ।

କୁସୁମ ବାସକୁ ଭାବିଲେ ନରେଶ,
"ଅଙ୍ଗ ସୁଗନ୍ଧ ଚନ୍ଦନସ୍ନେହେ
ସୁନ୍ଦରୀର କର— କମଳ ସୌରଭ
ଆସିଛି ସ୍ପର୍ଶ ସମୟେ ।"

ସୁନ୍ଦରୀର କର— ପଲ୍ଲବ ମାଧୁରୀ
ବାରମ୍ବାର ସ୍ମରି ସ୍ମରି
ଫୁଲ ଶୁଙ୍ଘି ଶୁଙ୍ଘି ଅପୂର୍ବ ଆମୋଦେ
ପରଶକୁ ଦେଲେ ଭରି ।

ଆମୋଦ-ହ୍ରଦରେ ଆଶା-ବୀଚି ଉଠି
ବାଢ଼ାଇ ହୃଦୟ-ଧାର
ବଢ଼ାଇଲା ଲଭ ବାମା-ନବ-ପ୍ରୀତି-
ଲକ୍ଷଣ-ସ୍ମୃତି- ଅପାର ।

ଯୋଷା ଥିଲା ଶୋଭା- ରତ୍ନାକର, ତାର
ପାରିଲା ସ୍ପର୍ଶି ଗଗନ,
ନୃପତି-ଆଷାଢ଼- ଆଗମନ ଶୁଣି
ଢାଳିଥିଲା ଇଚ୍ଛା-ଘନ ।

ଅପାଙ୍ଗ-ଦର୍ଶନ- କ୍ଷଣପ୍ରଭା ଉଠି
ନୃତ୍ୟ କରି ବାରମ୍ବାର
ନାଶ କରୁଥିଲା ନୃପ-ଚିତ୍ତ-ଦେଶ-
ନୈରାଶ୍ୟ-ଅନ୍ଧକାର ।

ରାଜା-ହୃଦ-ଧାର          ଚଳିଲା ଚଞ୍ଚଳ
  ସେତୁ ରତ୍ନାକର ଲକ୍ଷେ,
ପଥ ରୋକ ରୋକ          ଶବାଭ-ନୟନ-
  ନନ୍ଦନ-କାନନ-କକ୍ଷେ।
ଦେଖିଲା ନିକଟେ          •ବାମା-ପକ୍ଷୀ-ହୃଦ୍ୟ
  ହୋଇ ଭାବ ଅନୁକୂଳ
ସଙ୍ଗମ-ସରଣୀ          ଖଣ୍ଡ ଦେଇ'ଛନ୍ତି
  ଦୁହେଁ ହୋଇ ଦୁଇ କୂଳ।
ସନ୍ଧିରେ ନୃତ୍ୟକା—          ଗୁମ୍ଫଣ ସେ ପଥେ
  କୁଅଁର ଅଛନ୍ତି ବସି,
ରାଜା-ହୃଦ-ଧାର          ସାଗର-ଅଙ୍କରେ
  ଅନାୟାସେ ଗଲା ପଡ଼ି।
ହୃଦୟ ଗଲାରୁ          ବିବେକ ଲୋଡ଼ିଲା
  ଅଙ୍ଗ-ସମ୍ମିଳନ-ପଥ,
ଉଭା ହୋଇ ମନ          ବୋଇଲା, "ବିବେକ
  ପୂରିଛି ତୋ ମନୋରଥ।
ପ୍ରତ୍ୟକ୍ଷ ଦେଖିବୁ          ହୋଇ ଯାଉଅଛି
  କର କର ସମ୍ମିଳନ,
କର ସମର୍ପଣେ          ବୁଝିବୁ ଅମତ
  ନ ଥିଲା ବାଳାର ମନ।

ମନର ସମ୍ମତି ଥିବା ବିଷୟରେ
ପ୍ରମାଣ ଯଦ୍ୟପି ଚାହଁ,
ଭୁରୁବଙ୍କ କଣ୍ଠା ଲଗାଇ ଚାହିଁଲ,
କହ କି କରନ୍ତା ଆଜ୍ଞ ?

ବୋଲନ୍ତୁ ଅବା ତୁ ବାଳକାର ମନ
ଅଧୀନ ଅଟେ ପିତାର,
ବାଳକା ନୁହେ ସେ ଯୁବତୀ, ତା ମନେ
ନାହିଁ ପିତୃ-ଅଧିକାର ।

ସ୍ୱାଧୀନ ଯୁବତୀ ସ୍ୱାଧୀନ ମନରେ
କରନ୍ତୁ କର ଅର୍ପଣ,
ସାକ୍ଷୀ ପକ୍ଷୀଦ୍ୱୟ, ସାକ୍ଷୀ ତା ହୃଦୟ,
ସାକ୍ଷୀ ପାଶ ଶାଖିଗଣ ।"

ବିବେକ— "ସେହି ସ୍ୱେଚ୍ଛାଚାର ଶୁଣି ମୁନିବର
ହୁଅନ୍ତ ଯଦ୍ୟପି କ୍ରୁଦ୍ଧ ?"
ମନ— "ତାର ତପଃଶୀଳ ମୁନିଙ୍କ ବିବେକ
ନୁହେ କି ତୋଠୁଁ ପ୍ରବୁଦ୍ଧ ?"

ବିବେକ— "ସେ କର ବନ୍ଧନେ ହୁଳହୁଳି କାହିଁ,
ତଳା ହୋଇ ନାହିଁ ପାଣି,"
ମନ— "ପାଇକା-ବଦଳେ ହୁଳହୁଳି ଦେଲେ
ସହର୍ଷେ ଦ୍ୱିଜଭରଣୀ ।

ଜାଣି ନ ପାରିଲୁ, ସିକ୍ତ ହୋଇଥିଲା
ରମଣୀ-ହସ୍ତ-କମଳ,
ସ୍ୱେଦ ଯା ମଣିଲୁ, ଜଳେ କୁଶଧର
ଚାଳିଥିଲେ ପୂତଜଳ ।"

ବିବେକ— "ଦ୍ୱିଜ ତ ନ ଥିଲେ, କିଏ ଉଚ୍ଚାରିଲା
ବେଦ ମନ୍ତ୍ର ପାଦ କଥା ?"
ମନ— "ବସନ୍ତ କୋକିଳ ଉଚ୍ଚେ ଜପୁଥିଲା,
'ଶ୍ରୀରାମପଦ୍ୟ ସୀତା ଯଥା' ।"

ବିବେକ— "ସ୍ୱଚ୍ଛନ୍ଦେ ଅବଳା କର ଧରିବାର
ନୁହଇ କି ବଳାତ୍କାର ?"
ମନ— "ପ୍ରଣୟୀ ଯୁବତୀ କର ଯାଚି ଦେବା
ଗଥିଭ ନାହିଁ ଲଜ୍ଜାର ।

ପ୍ରଣୟ-ରାଜ୍ୟରେ ପ୍ରଣୟୀର ବଳ
ପ୍ରଣୟିଣୀ ଲୋଡୁଥାଏ,
ପନ ସମର୍ପଣ ବ୍ୟତୀତ ବିଦ୍ୟୁତ
ଲୋକକୁ ଭାବ ନ ଯାଏ ।"

ବିବେକ— "ଧନବଳେ ଯେବେ ପ୍ରୀତି ବିଦ୍ୟୁତର,
ଗର୍ଜନ କାହିଁ କି ଭ୍ରମ ?"
ମନ— "ଗର୍ଜନ କି ତାହା ଜଗତେ ବାଜଇ
ଦମ୍ପତି-ପ୍ରେମ-ଉଦ୍ଗମ ।"

ହୃଦୟ ବୋଇଲା, "ମୁଁ ଯହିଁ ଯାଉଛି
ତହିଁ କି ନ ଗଲେ ଅଙ୍ଗ,
ବସନ୍ତ-ବିରହ- ବକ୍ଷେ ହୋଇ ଯିବ
ଜୀବନର ସୁଖ ଭଙ୍ଗ ।

ତା ସଙ୍ଗ ବ୍ୟତୀତ ଜଗତ ପ୍ରତୀତ
ହେବ ନୀରସ ନିଶ୍ଚୟ,
ନୀରସ ଲାଗିବ ଇନ୍ଦ୍ର ସିଂହାସନ
ସୁରପୁର-ମଣିମୟ ।

ଯାଙ୍କ ଶୋଭା ଦେଖି ରାଜଲକ୍ଷ୍ମୀ ଯେ ତ
ଲଜ୍ଜାଇଅଛି ମୂର୍ତ୍ତିମତୀ,
ତା ଅଲୋକ ବିନା ପ୍ରଭାହୀନ ହେବ
ମଣିମୟ ରାଜଛତ୍ର ।

ତା କର-କମଳ ଅଧର-କମଳ
ଫୁଲର ସାଦୃଶ୍ୟ ଲଭି
ପଦ୍ମରାଗମଣି— ଅଙ୍ଗରୁ ଉଠିବ
ଉଜ୍ଜ୍ୱଳ ପ୍ରଭା ପଲ୍ଲବି ।

ତା ନୀଳ କୁନ୍ତଳ ଭ୍ରୂଲତାଯୁଗଳ
ଉଜ୍ଜ୍ୱଳ ନୟନ-ତାରା
ସମୀପସ୍ଥ ହେଲେ ନୀଳମଣି ଅଙ୍କୁ
ଝରିବ ପ୍ରଭାର-ଧାରା ।

ମୁକୁତାପଟଳ ପାଇଗଲେ ତାର
ନଖ ରଦ ଅଲଙ୍କାର
ଛନ ନୟନରେ କହିବେ କବିକ
ମଧୁର ଶୋଭା ବସ୍ତାର ।
ଚନ୍ଦ୍ର ଦୃହିଁ ଯଥା ଚନ୍ଦ୍ରକାନ୍ତ ମଣି,
ସୂର୍ଯ୍ୟ ସୂର୍ଯ୍ୟକାନ୍ତ ମଣି,
ରତନ ସକଳ ଉଲ୍ଲସିତ ହେବେ
ଦୃହିଁ ହେଲେ ଏ ରମଣୀ ।

ଇନ୍ଦ୍ର-ପଥ ହୋଇ- ଅଛୁ ସୁପ୍ରଶସ୍ତ
ବିଲମ୍ବ ନ କର ଚଳ,
ପାଟି ମେଲି ତରୁ- ତଳେ ଶୋଇଥିଲେ
ମୁଖେ ନ ପଡ଼ଇ ଫଳ ।"
ଏକାଳେ ଶିବରେ ବାଜିଲା ଗମ୍ଭୀରେ
ମଧ୍ୟାହ୍ନତୂର୍ଯ୍ୟର ବାଜା,
ମଣ୍ଡପରୁ ଉଠି ଶିବିର ମଧ୍ୟରୁ
ଚଳେ ଭର ଗଲେ ରାଜା ।

ଶକୁନ୍ତଳା ତେଣେ କୁଟୀରକୁ ଗଲା,
ସ୍ଥିର ହେଉ ନାହିଁ ମନ,
ଫେରିଁ ଲୁଚିଲ ପୁନଃପୁନଃ କରେ
ଅଙ୍ଗୁରୀୟ ଦରଶନ ।

ପ୍ରଣୟ-ବଲ୍ଲରୀ ।

କେତେବେଳେ          ଅବା ଛଳ କରି ବନ୍ଧୁ
ସଖୀଙ୍କ ସମୀପୁ ଯାଇ
ଅଙ୍ଗୁରୀ-ଅଙ୍କିତ          ଅକ୍ଷର ପଠନେ
ପ୍ରାଣ ଦିଏ ଉଚ୍ଛୁଳାଇ ।
ହୃଦୟ-ମନ୍ଦିରେ,          ନବ ପ୍ରତିଷ୍ଠିତ
ନୃପତି-ପ୍ରୀତି-ପ୍ରତିମା
ନବ ଜୀବନରେ          ଭର ଦେଉଥାଏ
ଭବ୍ୟ ନବ ମଧୁରିମା ।
ପ୍ରୀତି-ପ୍ରତିମାର          ପୂଜା କରି ତାର
ହୃଦୟ-ମନ୍ଦିର ପାଖ
ମନ୍ଦାକ୍ଷ-ତିମିର-          ଆଚ୍ଛାଦନ ମୁକ୍ତ—
ପ୍ରାଙ୍ଗଣରେ ଦେଲା ଦିଶ ।

ପୁଲକିତ ହୁଏ          ଯୋଷା ନୃପ-କର—
ପରଶ-ସୁଖ ସ୍ମରଣେ,
କଣ୍ଟକିତ ହୁଏ          ମଲ୍ଲୀବଲ୍ଲି ଯଥା
ବଲ୍ଲଭର ପ୍ରସରଣେ ।
ମନେ ଭାବେ, "ଯାଙ୍କୁ          ହୃଦୟେ ପୂଜୁଛି
ପୂଜି ପାରିବି କି କରେ ?
ପୁନର୍ଦ୍ଦର୍ଶନ          ଆଶା ଦେଇ'ଛନ୍ତି
ସତେ କି ଆସିବେ ଥରେ ?

## ଦ୍ୱିତୀୟ ସର୍ଗ ।

ଆହା କି ମଧୁର ମୂରତି ତାଙ୍କର
କି ମଧୁମୟ ବଚନ,
ବଚନ ନୁହେଁ ତା କେବଳ ଜୀବନ–
ଅଙ୍ଗରେ ସୁଧାସେଚନ ।

ସେ ବଚନାମୃତେ ପ୍ରାଣ ପଞ୍ଚବଟି
ହେବାର ନୁହଇ ବଡ଼,
ରାମ-ପଦ-ରଜେ ଅହଲ୍ୟାପରି ଏ
ଜୀବନ ଲଭିବ ଜଡ଼ ।

ଦରଶନ ଦେବେ ସତ, କିନ୍ତୁ ଯଦି
ଦାସୀ ନ କରିବେ ପଦେ,
ନାମେ ତପସ୍ୱିନୀ ଥାଇ ମରୁଥିବି
ଝୁରି ଏ ଆଶ୍ରମପଦେ ।”

ମନ ତା ରହିଲା ନୃପ ଭାବନାରେ,
କାର୍ଯ୍ୟ କରୁଥାଏ ହସ୍ତ,
କରଣୀୟ କାର୍ଯ୍ୟ ଅତିକ୍ରମ କରି
ଅନ୍ୟ କର୍ମେ ହୁଏ ନ୍ୟସ୍ତ ।

ଦେବପୂଜାପାଇଁ ସଂଗୃହୀତ ପୁଷ୍ପେ
ବରତି ବସିଲା ହାର,
ଉଦୁମ୍ବର ତେଜି ଚନ୍ଦନ ଉବଳେ
ନୟନ ରହିଲା ତାର ।

ଚାର୍ଯ୍ୟାବଳୀ ଶୁଣି          ସଖୀଦ୍ୱୟ ଜାଣି
ପାଇଲେ କାମିନୀ ମନ,
ଏକ ସଖୀ ଦେଖି          ଅପର ସଖୀକୁ
ଦେଖାଏ ଠାର ନୟନ ।
ବୃଦ୍ଧା ତପସ୍ୱିନୀ          ଗୌତମୀ କୁଟୀରେ
ନିକଟରେ ଥାନ୍ତି ବଢ଼,
ତେଣୁ ସଖୀଦ୍ୱୟ          ତାହାକୁ ଦେଖିକେ
କହି ନ ପାରନ୍ତି କଢ଼ ।
ଏତକମାତର          ଗୌତମୀ ଆଗରେ
ଜଣାଇଲେ ସଖୀଦ୍ୱୟ,
"ଆସିଛନ୍ତି ଏଥୁ          ବନକୁ ହସ୍ତିନା-
ନରପତି ସଦାଶୟ ।
ସମ୍ଭବତଃ ସେ          ପାରନ୍ତି ଆମ୍ଭର
ଆଶ୍ରମ ଦର୍ଶନପାଇଁ,
କଏ ସତକାର          କରିବ, ତାହାଙ୍କୁ
ରାଜ ମୃଗକୁଳସାଇଁ ?"
ଗୌତମୀ ବୋଇଲେ,          "ଜଳ ଫଳ ଫୁଲ
ନାହିଁ କି ଆମ୍ଭ ଅଛିତ ?
ଶକୁନ୍ତଳା ଦ୍ୱାରେ          ସତ୍କାରେ ନରେଶ
ପାଇବେ ହୋଇ ଅଛିତ ।

ଦ୍ୱାଦଶ ସର୍ଗ ।

ଜାଣ ଶକୁନ୍ତଳା ଅଟଇ ନିଶ୍ଚିତ
ଷତ୍ରିୟବରସନ୍ତତ,
ନଳେ ପାଦ ଥୋଇ ଅର୍ଗଳେ ଭୋଗିବ
ଷତ୍ରିୟବର ଭୂପତି ।”

ପ୍ରିୟମ୍ବଦା କହି ଶକୁନ୍ତଳା ପ୍ରତି
ବୋଇଲା, “ଶୁଣିଲୁ ସଖି,
ରାଜ-ସଭାକାର କହଇନ୍ତି ଗୁରୁ
ଉପଦେଶ ମନେ ରଖି ।”

ଶୁଣି ଶକୁନ୍ତଳା ପ୍ରେମ ଜରଜର
ଲାଜେ ମୁଖ କରି ନତ
ସ୍ୱଗତେ ବୋଇଲା, “ସଜନୀଙ୍କ ଏତ
ଅନୁକୂଳ ଗଳହସ୍ତ ।”

ଶକୁନ୍ତଳା ପୁଣ ସ୍ୱଜନ ସହିତ
ଦିବାକର ହେଲେ ଅସ୍ତ,
ନବୀନ ପ୍ରକୃତି— ସଙ୍ଗେ ତାର ନବ
ସନ୍ଧ୍ୟା ହେଲା ଉପଗତ ।

ଗଗନ ପବନ ବନ ଉପବନ
ହେଲା ତା ନବ ଜୀବନେ,
ସନ୍ଧ୍ୟାରାଣୀ ପଦ ନବ ରାଗ ରାଜି
ହେଲା ନବୀନାର ମନେ ।

ନବ ପ୍ରତିଭାତ ହେଲେ ନୟନରେ
ତାରକାପଟଳୀ କାନ୍ତି,
ପୁଷ୍ପାବଳୀ ନବ ସୌରଭ ବିତରି
ଦେଖାଇଲେ ନବ ଭାତି ।

ଯେମନ୍ତ ପରମ ବୋଧ ହେଲା ସବୁ
ତେମନ୍ତ ଲୋଡ଼ିଲା ମନ,
ଏକପ୍ରାଣ ହୋଇ ଭୋଗିବାକୁ ସବୁ
ପରାଣର ପ୍ରିୟଜନ ।

ଯେଉଁ ସଖୀଙ୍କର ସଙ୍ଗେ ଖେଳି ବୁଲି
ସୁଖେ ବଞ୍ଚୁଥିଲି ଦିନ,
ଆଜି ତାଙ୍କ ସଙ୍ଗ ସେହି ଲୀଳା ଖେଳା
ବୋଧ ହେଲା ରସହୀନ ।

ଅଲଣା ବ୍ୟଞ୍ଜନ ଚିରାଭ୍ୟାସ ବଶେ
ଭୋଜନରେ ଭଲ ଲାଗେ,
ଆଉ କି ତହିଁକି ମନ ବଳେ ଯଦି
ରସନେ ଲବଣ ଲାଗେ ?

ମନାପିଲା ବାମା ଚନ୍ଦ୍ରାଲୋକେ ପ୍ରିୟ—
ସଙ୍ଗେ କରନ୍ତା ବିହାର,
ତଉ ତୋଷେ ପୂର୍ଣ୍ଣ କରନ୍ତା ହୃଦୟେ
ଦେଇ ରମ୍ୟ ଫୁଲହାର ।

## ଦ୍ୱିତୀୟ ସର୍ଗ ।

ଉଦ୍ୟାନର ଧୀର ଗନ୍ଧବହ ଲଗୁ—
ଥାନ୍ତା ପ୍ରିୟ ଅପଘନେ,
ଜଗେ ଲଭିଥାନ୍ତା ସ୍ୱକର-ବର୍ଦ୍ଧିତ
ବୃକ୍ଷ ବଲ୍ଲୀ ପ୍ରଦର୍ଶନେ ।

ଚନ୍ଦ୍ରମା-କିରଣେ ମଣ୍ଡିତ-ପଲ୍ଲବ
ଧୀର ସମୀରଣେ ଥର
କୃତାର୍ଥ କରନ୍ତା ଉଜ୍ଜଳ କାନ୍ତିରେ
ପ୍ରିୟବର-ଚକ୍ଷୁ ଦ୍ୱୟ ।

ପ୍ରିୟତନୁ ଛୁଇଁ ଶାଖା-ଶିର-ପୁଞ୍ଜ-
କୁସୁମଗୁଚ୍ଛ-ସକଳ
ନତ ଜଳ ଦେବା ସ୍ନେହେ ବଢ଼ାଇବା
ଶ୍ରମ କରନ୍ତେ ସଫଳ ।

ପୁଲିନକୁ ଗଲେ କୌମୁଦୀ-ଦୀପିତ
ମାଲତୀର ମୃଦୁ-ବାତ
ପ୍ରିୟେ ତୋଷ ଦାନ କରନ୍ତା ସାରଜ-
ପ୍ରଭବ-ଶୀକର ସିକ୍ତ ।

ପ୍ରସାଦ-ପୂରିତ ପ୍ରିୟ-ମୁଖ ନଜେ
ଚୁହିଁ ଚୁହିଁ ପୁନଃ ପୁନଃ
ନୟନ ପ୍ଲାବିତ କର ପ୍ରୀତିଶ୍ରୁରେ
ପ୍ରାଣ କରୁଥାନ୍ତା ପୂର୍ଣ୍ଣ ।

ପ୍ରଣୟ-ତରଙ୍ଗ ।

ଏହିରୂପେ କେତେ        ଦଶା ଭାବ ଭାବ
ନବ ଅଙ୍ଗାବତୀ ବାମା
ନବୀନ ଉଲ୍ଲାସେ        ନବୀନ ଲାଳସେ
ଯାପିଲେ ନବ ଯାମିନୀ ।
ପ୍ରିୟ ଦରଶନ        ପ୍ରିୟ-ଦରଶନ-
ଆଶା-ଆଧାରେ ପ୍ରାଣର
ଦେବାରୁ ତୁଷ୍ଟେ        ପ୍ରଣୟ-ପଲ୍ଲବ-
ପଟଳ ହେଲା ସଫଳ । ୨୫ ।

# ତୃତୀୟ ସର୍ଗ ।

## ପ୍ରଣୟ-ପ୍ରସୂନ ।

ଯେତେ ମଧୁମୟୀ　　　ଚନ୍ଦ୍ରାରେ ନୃପଙ୍କ
　　ରଜନୀ ହୋଇଛି ଶେଷ,
ପ୍ରଭାତେ ପ୍ରକୃତି　　　ପିନ୍ଧାଇଲା ଆସି
　　ନବ ମଧୁମୟ ବେଶ ।

ପ୍ରାତଃ-କୃତ୍ୟ ନୃପ　　　କରି ସମାପନ
　　କାନନ ଭ୍ରମଣ ଛଳେ
ଏକା ବନେ ଚଳେ　　　ସୁନ୍ଦର-ମାଧୁର୍ଯ୍ୟ
　　ପୂରିଲ ହୃଦ-କମଳେ ।

କାଲି ଯା ସୁନ୍ଦର　　　ଦେଖିଥିଲେ ଆଜି
　　ଦିଶୁଛି ସୁନ୍ଦରତର,
ସୁନ୍ଦରୀର ରୂପ-　　　ସୁଧାରେ ଯେମନ୍ତ
　　ଝରୁ ସୁଧା-ନିର୍ଝର ।

ଯହିଁ ଦୃଷ୍ଟି ପଡ଼େ ସେ ସେତେ କହୁଛି
ସୁନ୍ଦରୀ ଅଛି ଏ ବନେ,
ଯହିଁ ମନ ଯାଏ ଦଶଇ ସୁନ୍ଦରୀ-
ମୂରତି ସ୍ମୃତି-ଦର୍ପଣେ ।
କାଲି ଯାହା ସବୁ ନୃପ ହୃଦୟକୁ
ଦେଖାଇଥିଲା ଶାନ୍ତିମୟ,
ଆଜି ସେ ସକଳ ବୋଧ ହେଉଅଛି
ମଦମୟ କାନ୍ତିମୟ ।
କାଲି ଯାହା ମନେ ଭାବିଥିଲେ ନୃପ
ପୂତ ଧୂମବହ୍ନିପୂର୍ଣ୍ଣ,
ଆଜି ଭାବୁ'ଛନ୍ତି ଲେପିତ ହୋଇ'ଛି
ତହିଁରେ ସ୍ମରକଚୂର୍ଣ୍ଣ ।

ଯେଉଁ ଫୁଲ ଫୁଲି- କାନ୍ତ ଫୁଲ-ଗନ୍ଧ
ଲଭି ଦେଉଥିଲେ ତାଳି,
ସେହି ଫୁଲ ଫୁଲି— କାନ୍ତ ଫୁଲ-ଗନ୍ଧ
ପ୍ରେମ ଦେଉଛନ୍ତି ଢାଳି ।
ଯେଉଁ ଡାଳେ ବସି ଶୁକ କରୁଥିଲା
ତାପସ-ଯଶ-ଭୂଷଣ,
ବନ୍ଧନର ଲୀଳା ବର୍ଣ୍ଣୁଛି ଧପେଇ
ସେ ତାର ତନ ଅସ୍ତ ।

ମୃଗ ମୃଗୀ ଯୋଡ଼ା        ତାପସ ସ୍ୱଭାବ
ବୋଧ ହେଉଥିଲେ ମନେ,
ଆଜି ବଶୁଛନ୍ତି        ଅତ୍ୟନ୍ତ ମଧୁର
ଦମ୍ପତି-ପ୍ରେମ-ବନ୍ଧନେ ।

ନବ ମୁକୁଳିତ        ବୋହାଙ୍ଗା ପାଦପୁଁ
ଆସିଲା ମଧୁର ଗନ୍ଧ,
ଡାଳେ ଡାଳେ ତାର        କ୍ରୀଡ଼ା କରୁଥିଲେ
ନବ ହୃଷ୍ଟ ଖଗବୃନ୍ଦ ।

ସମୁଜ୍ଜ୍ୱଳ-ଶାଳ        ପ୍ରକାଣ୍ଡ-ପ୍ରସୂନ-
ସ୍ତବକେ ମଣ୍ଡିଛି ମୁଣ୍ଡ,
ବନଲକ୍ଷ୍ମୀ-ଫଗୁ-        ଶୋଭା ସମ୍ପାଦୁଛି
କମଳାଗୁଣ୍ଡିର ସୁଣ୍ଡ ।

ଅଚଞ୍ଚିତ ବନ୍ଧୁ        ଲଜ୍ଜା ବନ୍ଧୁ ଭାରୁ
ବିବିଧ ବରଣ ଫୁଲେ
ପରସ୍ପର ତନୁ        ମଣ୍ଡନେ ନିରତ
ହୋଇଛନ୍ତି ପ୍ରେମାକୁଳେ ।

ଷଟ୍‌ପଦେ ଷଟ୍-        ପଦେ ପୁନଃ ପୁନଃ
ଢାଳ ପୁଷ୍ପ ଆଉଗାଳ
ପ୍ରେମ-ଗୀତ ଗାଇ        ପୁନଃ ପୁନଃ କରୁ-
ଅଛନ୍ତି ମୁଖ ଚୁମ୍ବନ ।

ପ୍ରଜାପତି ପ୍ରଜା— ପତିର ଘଟନା
ସଫଳ କରୁଛୁ କାହିଁ,
ବର୍ଷେ କଳେବର ମଣ୍ଡି ନବ ବର—
ବେଶେ ଫୁଲଫୁର ଯାଇ ।

ନରେଶ ମାଳଙ୍କ ଘରେ ଘରେ ଧୀରେ
ଧୀରେ କରୁଥିଲେ ଗତି,
ବୃନ୍ଦେ ସେ ସକଳ ଅତରେ ତତ୍ପର
ହୋଇଗଲେ ତାଙ୍କ ମତି ।

ଯା ମନ ଯେପରି ତାହାଁ ଯେପରି
ଫଳୁ ଥୋଇଥାଏ ବିଧି,
ଉତମନା ହେଲେ ଅମୃତ ଲଭଇ
ମ୍ରିତମନା ପାଏ ବିଷ ।

ଉଜ୍ଜ୍ୱଳ ଉନ୍ନତ ବିବେକାନୁଗତ
ମନ ଜନ- ନାଥଙ୍କର,
ସ୍ୱର୍ଗର ଅଳକ- ଜାତ-ବହୁ ପ୍ରତି
କଲେ ତାଙ୍କୁ ଅଗ୍ରସର ।

ଘର ତେଜ ମାର ଭକଟ ପୁଲକେ
ପୁଲକେ କର ଗମନ
ଦେଖିଲେ ନରେଶ ଲଗିଛୁ 'ନବକ୍ଷ
ସୁରମ୍ୟ ଦେବପ-ବନ ।

ତୃତୀୟ ସର୍ଗ ।

ନବ-ଯବନିକା          ଯାଉଛି ଟେକସ-
    କାଳନ-ସୈକତ-ପଥେ,
ପ୍ରଭାଆଗମନ          ପଦାଙ୍କ ନ ଦେଖି
    ଝଗ୍ରର ଜଳେ ସ୍ପର୍ଶରେ ।

"କାଏ କାଏ ପକ୍ଷି-          ଛନ୍ଦ ଭରଷକୁ
    ଜପ କରୁଛନ୍ତି ରହ,
ଶବ୍ଦ ର ପ୍ରସର          ହେଲାଣି ଲେଉଟି
    ନାହାନ୍ତି କ ଅଶା ବହ ?

ବେଳୁଁ ବେଳ ଏବେ          ତପରୁଁ ତପତ-
    ତର ହେଉଅଛି ବାଲି,
ଏତେବେଳ ଫେର          ନାହାନ୍ତି ଯଦ୍ୟପି
    ଅଉ କ ପାରବେ ଗୃଲି ?

ମଧ୍ୟାହ୍ନ ସମୟ          କଳ୍ପବାକୁ କଦା
    ବେତସ-କୁଞ୍ଜେ ଅଗତ
ମୃଗ-କୁମାରୀଏ          କରଛନ୍ତି ଏହୁ
    ରମ୍ୟ ସ୍ଥଳ ମନୋଜ୍ଞାତ ।

କଳ କଳ ନାଦେ          ବହୁଛ ନକଟେ
    ମାଳମା ନର୍ମଳ-ଧାର,
ପୁଲକ-ନକୁଞ୍ଜ          ନ ହେବ ଏ କାଳେ
    କାହାର ହୃଦୟ-କାର ?

ରଥାଙ୍ଗମିଥୁନ ହେଲ ତ ବେଳସ-
ଘନଚ୍ଛଦ-ଛାୟା ତଳେ,
ଏକ ଡାଳେ ବସି କେଶ ଖୁଣ୍ଟନ୍ତୁ
ନୀରବେ ରହୁ-କଣ୍ଠଳେ ।”

ଶୀତଳ ଚନ୍ଦ୍ରଣ ଉପଳକୁ ଚହିଁ
ସୁଆସନ ଭର ମନେ
ଅଲକ୍ଷିତେ ବସି ରହିଲେ ନରେଶ
ସେ ରମ୍ୟ ବେତସବନେ ।

ଅଚିରେ ଅଦୂରେ ଶୁଭିଲା ରମଣୀ-
କୋମଳ-କଣ୍ଠ-ସଙ୍ଗୀତ,
ମନ ଧ୍ୟାନ ଦେଇ ଶୁଣିଲେ ନରେଶ
ଥରେ ହୋଇ ଚମକିତ ।

[ଗୀତ]

“ବସିଲ ଭବରେ ସବେ କମଳିନୀ
ଥିଲୁ ଗିରି ଅନ୍ତରାଳେ,
ଜନମକାଳରୁ ଦର୍ଶନ ନ ଥିଲୁ
ଦିବାକର-କରଜାଳେ ।
ଦକ୍ଷିଣ ଭ୍ରମଣ ଶେଷ କରି ଏବେ
ଦର୍ଶନ ଦେଲେ ଭାସ୍କର,

ବରଷର ମାସ     ହେଲେ ଚଳିଥାନ୍ତି
   ବଢ଼ାଇଲେ ପୁଣି ଆଶ ।

ସେ ଜଳ-ପ୍ରବଣ     ଲଭି କମଳସ
   ହୋଇଗଲେ ମୁଖ୍ୟମାନ,

ଏଣୁ କାଳେ ଜଳଦ-     ଜାଲ ଅଚ୍ଛାଦନ
   ଭଳି ହେଲେ ଅନ୍ତର୍ଦ୍ଧାନ ।

ପ୍ରଭାତରେ ପୁଣି     ଉଇଁବାକୁ ରବି
   ଦେଇ ଯାଇଥିଲେ ଆଶା,

କମଳ ରହିଛି     ପ୍ରଭାତକୁ ଗାହି
   ଅନାଇ ହୃଦୟ-ଅଶ୍ରୁ ।

ବୁଝିଛନ୍ତି କିଏ     କେ ଜାଣି ଜଗତ-
   ଦେଖାଉଛି-ଦରଶ-ପଥ,

ଭବ ଭୁବନରେ     ତାଙ୍କ ବ୍ୟବହାରେ
   ନାହିଁ କମଳର ଗତି ।”

ସଙ୍ଗୀତ ଶବଦେ     ସ୍ତବ୍ଧ ହୋଇଗଲେ
   ନଦୀ-ଜଳ-କଳ-ତାନ

ନିଃଶବଦ ବନ     ଝିଲ୍ଲିରବ ସେଥି
   ଲଗାଇଲେ ଅନୁରାଗ ।

ନ ଥିଲେ ସଙ୍ଗୀତ     ଅତି ଉଚ୍ଚ, ଥିଲେ
   ମଧୁର ଗମ୍ଭୀର ଧୀର,

ନ ଥିଲା ତା ବଳ          ଲଂଘି ଯିବାପାଇଁ
ନଦୀ-ଘାଟ ବନ-ଶିର ।
ଯେ ସଙ୍ଗୀତ ଶୁଣି          ଚକ୍ରବାକୀ ମୁଖ
ଅନାଇଲା ଚକ୍ରବାକ,
ନଦୀ-କୂଳ-ବନ୍ଧୁ          ପ୍ରିୟ ବାନ୍ଧବୀଙ୍କ
ଶୁଣିବାକୁ ଦେଲା ଡାକ ।

କପୋତ ଚମକି          ତୁନି ହୋଇ ଥରେ
ପୁଣି ଛାଡ଼ି ଦେଲା ସ୍ୱର,
ଲୁହ କରି ଗୀତ-          ସ୍ୱର ପ୍ରଶଂସିଲା
କୋକିଳ ଗାୟକବର ।
ସଙ୍ଗୀତ-ନର୍ତ୍ତରେ          ନୃପଙ୍କର ପ୍ରେମ-
କୁଞ୍ଜ ହୋଇ ଉଚ୍ଛଳିତ
ବଢ଼ିଗଲା ପ୍ରାଣ-          ସହିତ ହୃଦୟ-
ପୁଳକ ହେଲା ପ୍ଲାବିତ ।

ଉନ୍ମତ୍ତ ହୋଇ          ଜଳରୁ ପକ୍ଷୀଏ
ସ୍ରୋତାଗ୍ରେ ଗଡ଼ି ପଡ଼ି,
ନବୀନ ବଳରେ          ମନ-ମୀନ ବେଗେ
ଉପରକୁ ଗଲା ଚଢ଼ି ।
ସନ୍ଧ୍ୟାଲୋକ ପଛେ          ଗନ୍ଧର୍ବ ପକ୍ଷୀଏ
ମନ ପଛେ ନରବର

## ଷଷ୍ଠ ସର୍ଗ ।

ନିଭଳ ପଥେ ନିକୁଞ୍ଜ ନିକଟ
ଗମନ କଲେ ସତ୍ୱର ।
ଅଲକ୍ଷରେ ଥାଇ ଲକ୍ଷ କଲେ କୁଞ୍ଜ-
ଗର୍ଭେ ପାଇ ରନ୍ଧ୍ର-ପଥ,
ଅନସୂୟା ସଖୀ କୁସୁମର ହାର
ଯତନେ ହୋଇଛି ରତ ।
ଶକୁନ୍ତଳା ଫୁଲ- ହାର ଗୁନ୍ଥି ପୁଣି
ମନେ ଭାବୁଥାଏ ଆନ,
ବୋଧ ହେଲା ତହିଁ ପ୍ରିୟମ୍ବଦା ସଖୀ
ଶେଷ କରିଥିଲା ଗାନ ।
ପ୍ରିୟମ୍ବଦା ହସି ଅନସୂୟା ପ୍ରତି
ବୋଇଲା, "ଥାଉ ତୋ' ହାର,
ମୁଁ ଯାହା ଜାଣଇଁ ଗାଇଲି, ତୁ ଏବେ
ଗାଉ ନା ଏକବାର ?"
ଅନସୂୟା ହସି ବୋଇଲା, "ତୋ ଗୀତ
ପରି ନୁହଇ ମୋ' ଗୀତ,
ମୁଁ ଗୀତ ଗାଇଲେ ପବନ ଦେବତା
ହୋଇଯିବେ ଉପସ୍ଥିତ ।
ହାର ତୋଡ଼ିଥିଲେ କି ହେବ ପୂରବ
ଶକୁନ୍ତଳା ପ୍ରାଣେଶ୍ୱରେ ?"

## ପ୍ରଣୟ-ବଲ୍ଲରୀ ।

ଶକୁନ୍ତଳା ତନ୍ୱୀ    ଅନେ ଥିଲ, ଛନ୍ଦି
ନ ଥିଲା ତାଙ୍କ ଭୂଷରେ ।
ପ୍ରିୟମ୍ବଦା ତାହା    ଜାଣି ଶକୁନ୍ତଳା
କେଶ ସଜାଡ଼ିବା ଛଳେ,
ପୁଷ୍ପ ଆଭରଣେ    ମଣ୍ଡି ଦେଲା ତାର
କେଶ କର୍ଣ୍ଣ କଉଶଳେ ।

ଅନସୂୟା ଏଣେ    ଅବସର ପାଇ
ପୂର୍ଣ୍ଣ କରିଦେଲା ତାର,
ପ୍ରିୟମ୍ବଦା ପୁଣି    ବୋଇଲା, "ସଜନି !
ଗାଅ ଏବେ ଏକବାର ।"
ଅନସୂୟା ସଙ୍ଗେ    ବସି ଢପି ତର
ସଙ୍ଗୀତ ସାବଧାନ,
"ଦେବ ଆସିଯିବେ    ପରାଣ-ଦେବତା,"
ବୋଲି ଆରମ୍ଭିଲା ଗାନ ।
"ଚୂତ ପକ୍ୱ ହେଲେ    କୋକିଳ ଆସଇ
ଭାଷଇ ମଧୁର ଭାଷା,
ପୁଣ୍ୟ ପକ୍ୱ ହେଲେ    ପରାଣ-ଦେବତା
ପୂରଣ କରନ୍ତି ଆଶା ।
ନିର୍ମଳ ଗଗନେ    ଚନ୍ଦ୍ର ଥିଲେ ସିନା
ଦିଶନ୍ତି ନୀର-ଦର୍ପଣେ,

ନିର୍ମଳ ପୀରତି ଜାତ ହୋଇଥିଲେ
ପାଶକୁ ଅସନ୍ତି ଜନେ ।
ସୁଜନ ପ୍ରକୃତି ଲଭଇ ବଳୁତି
ଶୁଣା ନାହିଁ କାଳେ କାଳେ,
ସେ କଥା ଅନ୍ୟଥା ହେବାର ବ୍ୟବସ୍ଥା
ଅଛି କି ମୋ ସଖୀ କହିଲେ ?
ରତ୍ନ-ପରୀକ୍ଷକ ରତନ ପାଇଲେ
ଦେଇ କି ପାରଇ ଛାଡ଼ି ?
ବିକଶିତ ଫୁଲ ହସ୍ତରେ ପଡ଼ିଲେ
କେ ଦେଇଛି ପଦେ ମାଡ଼ି ?
ରସନା ରହିତ ନ ଥିଲେ ଅମୃତ
କାହାକୁ ଲାଗିଛି ପିତା ?
ଯା କଣା ଲଭିଲେ ବିଶୁଷ୍କ ବାଟିକା
ହୋଇଯାଏ ପଲ୍ଲବିତା ।
ଏସ ମୋ’ ସଖୀର ପରାଣ-ଦେବତା,
କାହିଁକି ଲୁଚିଲ ଦୂରେ ?
ଜନ୍ମାନ୍ତରେ ଥରେ ବର୍ଣ୍ଣିତ ହୁଅ
ମୋ’ ସଖୀ ହୃଜିବ ମୁଦେ ।”
“ଗାଳି ଦଅ ରଖି” ପ୍ରିୟମ୍ବଦା ସଖୀ
ବୋଲଇ ପରିହାସରେ,

“ଶବ୍ଦ୍ୟତ ବେଗରେ ଆସିଲେଣି ନୃପ
ତୋ ଦର୍ଦ୍ଦୁର-ବର ସ୍ୱରେ ।”
“ଆସିଲେଣି ନୃପ” ଶବଦେ ଚମକି
ଶକୁନ୍ତଳା ଦେଲ୍ଲ ଚାହିଁ,
ନିକୁଞ୍ଜ ଦୁଆରେ ଉଭା ହୋଇଛନ୍ତି
ପ୍ରାଣପ୍ରିୟ ନରସାଇଁ ।
ଚାହିଁ ସଖୀଦ୍ୱୟ ଉଭା ହୋଇଗଲେ,
ଉଭା ହେଲ୍ଲ ଶକୁନ୍ତଳା,
ସଖୀଯୁଗଳର ପାଦୁଁ ମୁଣ୍ଡଯାଏ
ଲଜ୍ଜା-ସ୍ରୋତେ ବୁଡ଼ିଗଲ୍ଲ ।
ଶକୁନ୍ତଳା ପ୍ରାଣ ଦୋଳାୟିତ ହେଲ୍ଲ
ପ୍ରେମ-ତରଙ୍ଗରେ ଭାସି,
ତେବେହେଁ ବଚନ- ବଦନା, ତାହାକୁ
କେହୁ ନ ପାରନ୍ତି ଭାଷି ।
ପ୍ରିୟମ୍ୱଦା ଚାହିଁ ଭାବ ଜଣାଇଲ୍ଲ
ଶକୁନ୍ତଳା ପ୍ରତି ଠାରି,
ପଦ ପ୍ରକ୍ଷାଳନେ ବିଳମ୍ବ ନ କର
ଭୃଙ୍ଗିକାରେ ଅଛି ବାରି ।
ଶକୁନ୍ତଳା ସେହୁ ଭାର ଅରପିଲ୍ଲ
ଠାରି ଅନସୂୟା ପ୍ରତି,



'ଅଣିଲେଣି ନୃପ'             ଶବଦର ଗମକ
'ଶକୁନ୍ତଳା ଦେଖ ଏହିଁ',
ଚକ୍ଷୁ ଦୁଅରେ             ଭସ୍ମ ହୋଇଛନ୍ତି
ପ୍ରାଣପ୍ରିୟ କରଷାଢିଁ ।

ଶକୁ ଅନସୂୟା ଅସମ୍ଭବ ହେଉ,
ବୋଲୁଥାଏ ତାର ମତି ।
ଅନସୂୟା ହସି ବୋଇଲା, "ସଜନ !
ନଜେ ବନ୍ଧି ନଜ ଘର,
ବଧି ଦେଇ ନାହଁ, ଅରଜ ନାହିଁ ମୁଁ
ଯେ ଭଗ୍ୟର ଅଧିକାର ।"

ପ୍ରେମ-ବକର୍ମିତ- କରେ ଶକୁନ୍ତଳା
କଲା ପଦ ପ୍ରକ୍ଷାଳନ,
ପ୍ରିୟମ୍ବଦା ଏଣେ ପାଞ୍ଚ ଦେଲା ନବ-
ପଲ୍ଲବେ କୋମଳାସନ ।

ସ୍ଥରଣରେ ପର — ସ୍ଥରେ ମନେ କଲେ
ଯୋଷାକର, ଯୁବାପଦ,
ସୁରୁ ନୃତ୍ୟ ଏହୁ ଗଉରବ ଭୁଲେ
ସ୍ୱରଗ-ପଣ-ସମ୍ପଦ ।

ସଖୀ ଅନୁରୋଧେ ବସିଲେ ନରେଶ
କୋମଳ ପଲ୍ଲବାସନେ,
ରକ୍ତିମ ହାସନେ ବସିବା ସୁଖରୁ
କର ସୁଖ ହେଲା ମନେ ।

ସଖୀଙ୍କ ନଦେଶେ ଶକୁନ୍ତଳା ଦେଲା
ଜଳପଣ-ଗଜେ ହାର,

ପ୍ରାଣପତି ପାଶି            ମନେ ଦେଲ ଫୁଲ–
ହାଭ ପଦେ ପ୍ରେମ-ଭର ।
ପ୍ରିୟମ୍ବଦା ହସି            ବୋଇଲା, "ନରେଶ !
କି ଦେଇ ସର୍ଗୀ ଅମ୍ବର
* ତପସ୍ୱିନୀ କନ୍ୟା            ତାପସ ନକୁଞ୍ଜେ
ତୋଷିବ ଅତିଥିବର ?
୧ ପାଣିଗ୍ରହଣରୁ            ବୁଝିଅଛୁଁ ଭାଇ
ସୁଜବେ ତୁମ୍ଭେ ଉଦାର,
୨ ବାହୁଲ୍ୟେ ମାତର            ଜାଣୁଅଛୁଁ ଅମ୍ଭେ
ମୃଗନୟନୀ ନିଜ ଉଦାର ।
* କୁମାରୀ-ସୁଲଭ-            ଦାନ ମାତ୍ର ଅଛି
ସମ୍ବଳ ଏ ତପୋବନେ,
ତଦର୍ଥେ ଜଣ            ତାପସକୁଳକୁ
ତହିଁ ତୃପ୍ତି ଲଭ ମନେ ।"

---

* ଅତିଥିବର—ଅତିଥି ସ୍ୱାମୀ ଓ ଅତିଥିଶ୍ରେଷ୍ଠ ।

(୧-୨)—ତାଙ୍କ ପାଣିଗ୍ରହଣରୁ (ହସ୍ତଧାରଣରୁ) ବୁଝିଅଛୁଁ, ତୁମ୍ଭେ ସୁଜବେ ଉଦାର; ହେ ଉଦାର, ଅମ୍ଭେ ମୃଗନୟନୀ ବାହୁଲ୍ୟେ ମାତ୍ର ଜାଣୁଅଛୁଁ । ଅନ୍ୟପକ୍ଷେ ତାଙ୍କ ପାଣିଗ୍ରହଣରୁ (ବୈବାହିକ କାର୍ଯ୍ୟରୁ) ବୁଝିଅଛୁଁ । ତୁମ୍ଭେ ସୁଜବେ ଉଦାର; ଅମ୍ଭେ ବାହୁଲ୍ୟେ ମାତ୍ର ଜାଣୁଅଛୁଁ, ମୃଗନୟନୀ (ଶକୁନ୍ତଳା) ଦାର (ଭାର୍ଯ୍ୟା) ହେଉ ।

* —କୁମାରୀ-ସୁଲଭ-ଦାନ—କୁମାରୀର ସୁଲଭ ଦାନ । ଅନ୍ୟପକ୍ଷେ କୁମାରୀରୂପକ ସୁଲଭଦାନ ।

ତୃତୀୟ ସର୍ଗ ।

ଭାଗ୍ୟ ଅନୁସାରି ରାଜା ମନେ କଲେ
ବୈରାଗୀ ହେବାକୁ ଥିଲା ଯାହା,
ବେଗ ପ୍ରଶମନ ବ୍ୟବସ୍ଥା ଶ୍ଲୋକରେ
ଭୂପଙ୍କ ଭାଷିଲ ତାହା ।

ପ୍ରକାଶେ ବୋଇଲେ, "ତପସ୍ୟାର ଫଳ
ରାଜ-ପ୍ରାପଣୀୟ ନବ,
୧ ହୃଦୟର ଦ୍ୱାର କରଦେଲ ପିଣ୍ଡ
ତାହା ତପସ୍ୱିନୀ ବର ।"

ପ୍ରିୟମ୍ବଦା ସଖୀ ନୃପଙ୍କୁ କହିଲା,
"ବନଫୁଲ ସମାବୃତ
୨ ତେବେ କି ପ୍ରମଦା— ରଣ୍ୟ ସାର ପୁଷ୍ପ
ସବୁ ଯହିଁ ସମାହୃତ ?"

ନରେନ୍ଦ୍ର ବୋଇଲେ, "କରଗତ ହେଲେ
ନନ୍ଦନର ପାରିଜାତ,
ସହଜେ ପାର୍ଥିବ ପ୍ରସୂନ ସକଳ
ହୋଇଥାନ୍ତି ଅବଜ୍ଞାତ ।"

---

୧—ତପସ୍ୱିବର—ତପସ୍ୱିଶ୍ରେଷ୍ଠ, ଅନ୍ୟପକ୍ଷେ ତପସ୍ୱିନୀ ବର—ଶକୁନ୍ତଳାର ଦୁଷ୍ଟ ।
୨—ପ୍ରମଦାରଣ୍ୟ—ରାଜାଙ୍କର ଅନ୍ତଃପୁରସ୍ଥ ଉଦ୍ୟାନ, ଅନ୍ୟପକ୍ଷେ, ସ୍ତ୍ରୀସମାଜ ।

୧ ସଖୀ ପଚାରିଲା ସଖୀ ପ୍ରତି, "ସଖୀ-
ନନ୍ଦନ ପାଇବ କିସ ?
କଣ୍ଠାସକ୍ତକର ନିତାନ୍ତ ଜଗତେ
ନଦୀ ନାରୀ ନରାଧୀଶ ।"

୨ ସେ ବୋଇଲା, "ସ୍ୱର୍ଗ ନନ୍ଦନର କଥା
କି ହେବ ଅମ୍ଭେ ପଚାରି ?"
୩ ନୃପତି ବୋଇଲେ, "ସତ ସତ ସତ
ସେ ମୋ ଉତ୍ତରାଧିକାରୀ ।"

ତାପସିକ ରସେ ନାଗରିକ ରସ
ବଳୁଁ ପ୍ରେମରସ ପରି
ଅମା-ସ୍ୱାତି-ଘନ ଯୋଗେ ମିଳି ଭଲେ
ଅନନ୍ତର ମହାଝଡ଼ ।

ଝଡ଼-ଅନ୍ଧକାରେ ଭାସୁର ପତ୍ର-ଏ
ଲଜ୍ଜା-ରାଜ୍ୟ-ଅଭିମାନ

---

୧—ସଖୀ ପ୍ରତି ସଖୀ ପଚାରିଲା, ହେ ସଖି, ନନ୍ଦନ (ଉଦ୍ୟାନ) କିସ ପାଇବ ? ଅନ୍ୟ ପକ୍ଷେ, ସଖୀ ସଖୀ ପ୍ରତି ପଚାରିଲା, ସଖୀନନ୍ଦନ (ଶକୁନ୍ତଳାର ପୁତ୍ର) କିସ ପାଇବ ?

୨—ସେ ବୋଇଲା, ନନ୍ଦନର (ଉଦ୍ୟାନର) କଥା ଅମ୍ଭେ ସ୍ୱର୍ଗ (ଭିନ୍ନ ବନ) ପଚାରି କି ହେବ ? ଅନ୍ୟ ପକ୍ଷେ ସେ ବୋଇଲା, ସ୍ୱର୍ଗ ନନ୍ଦନର (ଭରତଙ୍କ ପକ୍ଷର) କଥା ଅମ୍ଭେ ପଚାରି କି ହେବ ?

୩—ଉତ୍ତରାଧିକାରୀ—ଉତ୍ତରର ଅଧିକାରୀ, ଅନ୍ୟ ପକ୍ଷେ ପରବର୍ତ୍ତୀ ଅଧିକାରୀ ।

ପ୍ରେମ-ପ୍ଲାବନରେ ନିକୁଞ୍ଜ-ଗହନେ
ହୋଇଗଲା ଅପିଧାନ ।
ତପସ୍ୱିମାନଙ୍କର ତପ-ଶୁଷ୍କ-ପ୍ରାଣ-
ଝାଙ୍କରଢୁଁ ଗଲା ବୁଡ଼ି,
କୃଶା ହେଲା ନାହିଁ ଜ୍ଞାନ-ପଥ ସରୁ
ମନ ଗଲା ପଥ ହୁଡ଼ି ।
ଶକୁନ୍ତଳା ତହୁଁ ସବୁ ଜାଣି ଜାଣି
ତତ୍ତ୍ୱ ନ ବୁଝିଲା ପର
ପୁଲକିତ ପ୍ରାଣେ ଲଜ୍ଜାଭରେ ଥାଏ
ମୁଣ୍ଡ ଅବନତ କରି ।
ମୃଗଶିଶୁଟିଏ ଦେଖିଲେ ସଖୀଏ
ନିକୁଞ୍ଜପ୍ରାଙ୍ଗଣେ ଛିଡ଼ା,
ଜନନୀ ତାର ଲେଉଟୁଛି ଯେମନ୍ତ
ପାଇ କ୍ଷୁଧା ତୃଷା ପୀଡ଼ା ।
ପ୍ରିୟମ୍ବଦା କହି "ଅହା ମୃଗ-ଶାବ
ହୋଇଅଛି କ୍ଷୁଧାତୁର,
ତା ମା ନିକଟକୁ ନେଇ ଦିଏଁ" ବୋଲି
ନିକୁଞ୍ଜରୁ ହେଲା ଦୂର ।
ଅନସୂୟା କହି "ଶିଶୁଟିକୁ ନେଇ
ଦେଇ ଛୁ ଯତନ କରି,

ମୃଗୀକୁ ମୁଁ ଧର    ଅଣୁଅଛି" ବୋଲି
ତା ସଙ୍ଗେ ଗଲି ସତ୍ୱର ।

ଶକୁନ୍ତଳା ହୋଇ    ଉତ୍ତର ବୋଇଲା
"ମୁଁ ହେଲି ଯେ ଏକାକିନୀ ?"
ରାଜା– "ତବ ଦ୍ୱୟ ସଖୀଙ୍କୁ ନିକୁଞ୍ଜରେ ମୋତେ
ପ୍ରେମଧନେ ଏକା କରି ?"

୧ "ମୁଁ ନ ଜାଣେ" କହି    ଶକୁନ୍ତଳା ହେଲା
ଯିବାପାଇଁ ତରତର,
୨ ରାଜା– "ମୁକ୍ତ ଜାଣ ହେଲେ ବସି ଏ କୁଞ୍ଜରେ
ସୁବର୍ଣ୍ଣ ରଚନା କର !"
ଶକୁ– "ନ ଜାଣଇଁ ମୁହିଁ    କାନନବାସିନୀ
ରଚନାଟି ସୁବା କଣ ?"
ରାଜା– "ସତ କହିଲ ଗୋ    ସୁଧାସୁଭାଷିଣୀ
ଜାଣନା ତ ସୁଧାକଣ ?"
ଶକୁ– "ସୁଧାକଣା କାହୁଁ    ପାଇବ ତା ଯଶ
ଥାଏ ପୂର୍ଣ୍ଣ ଶଶଧରେ ?"
ରାଜା– "ସେ ତ ସକଳଙ୍କ    ପୂର୍ଣ୍ଣ ଅଛି ସୁଧା
ଅକଳଙ୍କ ତୋ ଅଧରେ ।"

---

୧—ମୁଁ ନ ଜାଣେ—ମୁଁ ଜାଣେ ନାହିଁ । ୨—ମୁକ୍ତ ଜାଣ ହେଲେ—ଲେଖନ-ମୁକ୍ତ ଜାଣ ହେଲେ, ସୁବର୍ଣ୍ଣ—ଉତ୍ତମ ଅକ୍ଷର ।

ଏରୂପେ ଶବଧ                କୌତୁକେ ବିନୋଦେ
ବେଳ ହେଲା ଅବସାନ,
କୁଞ୍ଜ-ରନ୍ଧ୍ର-ପଥେ                ଶୃଙ୍ଗ ତାଙ୍କ ସାଙ୍ଗ
ସ୍ନିଗ୍ଧ ଦେଲେ ବନସ୍ଥାନ ।

ପର ପ୍ରେମ ଶୁଣି                ନିଜ ପ୍ରେମ ଧାରା
ହୋଇଥାଏ ଉଚ୍ଛ୍ୱସିତ,
ଛାୟା ଲୋଭେ ତରୁ—                ମୂଳକୁ ଛାଡ଼ି
କର କଲେ ପ୍ରସାରିତ ।

ଲତା ଆଲିଙ୍ଗନେ                ପ୍ରଫୁଲ୍ଲ-ବଦନେ
ଛାୟା ଦେଖି ତରୁ-ତଳ
ଉଦ୍ୟାନ-କୁଞ୍ଜ-                ବିଳାସ-ଲାଳସେ
ଚପଳା ହୋଇ ଚଞ୍ଚଳ ।

ଗଲା ବେଳେ ଲମ୍ବ                ହୋଇ ପଡ଼ି ଛାୟା
ତରୁବର ପଦ ଧରି
ବୋଇଲା, ଆସିବ,                ଆସିବେ ଯଦ୍ୟପି
ମୋ ଚନ୍ଦ୍ରିକା-ସହଚରୀ ।

ଅତୁଳ ବାଜନେ                ପ୍ରିୟମ୍ବଦା ତେଣେ
ଉର୍ଦ୍ଧ୍ୱରେ ଦେଲା ତାନ,
"ଜଳନିଧି ଦେଖି                ମିହିର ଗଲେଣି
ଚକ୍ରବାକ ଚକ୍ରବାକୀ !"

ପ୍ରଣୟ-ପରୀକ୍ଷା ।

ଶିବିରକୁ ଗଲେ ନୃପତି, ସୁନ୍ଦରୀ
କୁଟୀରକୁ ଫେରା ନତ,
ସୁନ୍ଦରୀ-ହୃଦୟେ ପ୍ରଣୟ-ପ୍ରସୂନ
ହୋଇଗଲା ବିକଶିତ ।

ଉଦ୍ୟାନକାଳୀନ ' ସନ୍ତୁଷ୍ଟ-ଦର୍ଶନ
ନୃପତିଙ୍କ ମୂର୍ତ୍ତି ସ୍ମୃତି
ପ୍ରଣୟ-ପ୍ରମୋଦ- ସମ୍ପୃକ୍ତା ସୁନ୍ଦରୀ
ଯାପନ କଲା ଶର୍ବରୀ ।

ଗଲା ଶୁଭ ରାତ୍ର ସେ କାଳେ ନରେଶ
ପ୍ରମୋଦେ ଛାଡ଼ି ବିଳାସ
ନଗରୀକୁ ଗଲେ ସୁନ୍ଦରୀକି ଦେଇ
ପରେ ନେଇଯିବା ଆଶ । ୯



# ଚତୁର୍ଥ ସର୍ଗ ।



## ପ୍ରଣୟ-ସୌରଭ ।



ନରପତି ଗଲେ ନିଜ ନଗରକୁ
ସୁନ୍ଦରୀ ବୃନ୍ଦଳା ସଙ୍ଗେ,
ନରପତିଙ୍କର ବିଳାସ ସକଳ
ଲୀଳା କଲା ବାମା ସଙ୍ଗେ ।

ଚିର ଅଭିଳଷିତ ଲଭନେ ବାମାର
ମନ ହେଲା ଉଦାସୀନ;
ନବ ନବ ସୁଖ— ମଧୁରୀ ସୁଖ ଯହିଁ
ତହିଁ ହେଲେ ସମାସୀନ ।

ରାଜପୁର, ରାଜ— ଭବନ, ନଗର,
ଅଶ୍ୱ ଗଜ ଦାସ-ଦାସୀ
ଚଉରଙ୍ଗ ଚଳେ ବଳବାହିନୀର
ଭଲ୍ଲୁକା-କ୍ଷେତ୍ରରେ ଆସି ।

ମନେ ମନେ ସଜ ହୋଇ ଯାଉଥାଏ
ପତିପୁର ଯିବାପାଇଁ,
ଦୁଃଖ ଢଳେ ପୁଣି ତାର ସଙ୍ଗିମାଙ୍କ
ଛଣା ବରଦଙ୍କୁ ଧ୍ୟାୟି ।
ସେନେହପୋଷିତ ମୃଗ ବହଙ୍ଗଙ୍କ
ଏବେ ଛାଡ଼ି ଯିବ ବୋଲି,
ସ୍ନେହମୟୀ-ଦୃଷ୍ଟି ଦେଖୁଥାଏ ତାଙ୍କ
ସୁଧର ଅଙ୍ଗଣେ ବୋଲ ।
ତେବେ ଉଭା ହୋଇ ସ୍ୱହସ୍ତ-ରଚିତ
ପାଦ୍ୟ-ବଲ୍ଲରୀ-ପାଶେ
କରୁଥାଏ ତାଙ୍କ ଭବିଷ୍ୟତ ଚିନ୍ତା
କଳ୍ପିତ-ବରହୋଲ୍ଲାସେ ।
ଆଶ୍ରମର ସ୍ନେହ— କରୁଣାରେ ମିଶି
ବସ୍ତ୍ରଭାର ପ୍ରେମ-ଭାବ
ମୁହୁର୍ମୁହୁ କର- ଦେଉଥାଏ ତାର
ପରାଣେ ପୁଲକ ଜାତ ।
ପ୍ରଥମେ ପ୍ରଥମେ ସମସ୍ୱର ସ୍ରୋତ
ପ୍ରବାହିତ ହେଲା ଖର,
ଦନ୍ଦ୍ୱଳ ହୋଇ ଅପିଲା ତା' ଗତ
କ୍ରମେ ମନ୍ଦ ମନ୍ଦରେ ।

ଚତୁର୍ଥ ସର୍ଗ।

କାନ୍ତ-ଦରଶନ ଉତ୍କଣ୍ଠା ଯାହାର
କ୍ରମଶଃ ହୋଇ ଉନ୍ନତ,
ସ୍ଥିରୁ ସ୍ଥିରତର କଲା ସମ୍ମୁଖରୁ
ରୁଦ୍ଧ କରି ଗତି-ପଥ।

ଶକୁନ୍ତଳା ମନ ସହିତ ସମସ୍ତ
ଉଚ୍ଚାଟଣି ରହିଲେ ଗତ,
କଲ୍ପନା ଆଣିଲା ଆଶ୍ରମ-ଅତିଥି-
ହସ୍ତିନା-ଅବନୀ-ପତି।

କୁଞ୍ଜ-ଆଳାପନେ, କାନନ-ଭ୍ରମଣେ
ହେଲେ ତାଙ୍କ ସଙ୍ଗେ ରତ,
ମନ ତାର ସୁଖ ଅବଲୋକ ସ୍ଥାନ
ହେଲା ତାଙ୍କ ଅନୁଗତ।

ଶକୁନ୍ତଳା-ଦେହ ମାତ୍ର ରହିଲା
ଆଶ୍ରମ-କୁଟୀରେ ବସି,
ଜାଣନ୍ତେ ନ ଥିଲେ ସଖୀମାନେ ତାହା
ଅନ୍ୟ ତାପସ ତାପସୀ।

କୁଟୀର-ପ୍ରାଙ୍ଗଣେ ଉପଗତ ହେଲେ
ଅତିଥିରୂପେ ଦୁର୍ବାସା,
ଦେଖିଣିଲେ କୁମାରୀ ବସିଅଛି, କିନ୍ତୁ
ନ କହିଲା ତାଙ୍କୁ କଥା।

'ଅତିଥି ମୁଁ' ବୋଲି ଡାକିଲେ ମୁନି
କୁମାରୀ ଶୁଣିଲା ନାହିଁ,
କେମନ୍ତେ ଶୁଣନ୍ତା ତା ମନ ଅତିଥି
ହୋଇଥିଲା ଦୂରେ ଯାଇ ।
ତହିଁ ମୁନିବର କମ୍ପସ୍ତ ସହିତ
ମନେ ବହୁ ଅପମାନ
କ୍ରୋଧରେ ବୋଇଲେ, "ଅଭିମାନିନୀ ଲୋ,
କାହିଁ ଥାଇ ତୋର ଧ୍ୟାନ ?
ମୁନି-ଆଶ୍ରମରେ ଥାଇ ତୋ ଆଶ୍ରମ-
ବିଧାନରେ ଅବହେଳା,
କର୍ତ୍ତବ୍ୟ କରମ ଏଡ଼ି ତୋ ମାନସ
ଦୂରେ କରୁଅଛି ଖେଳା ।
ସେନ ପୂଜ୍ୟ-ପୂଜା- ବ୍ୟତିକ୍ରମ-ଫଳ,
ଯାଠାରେ ରହିଛୁ ଲିପ୍ତ,
ସେ ତୋତେ ଚିହ୍ନିବ ନାହିଁ ତୁ ଦେଲେହେଁ
ଆପଣାର ପରିଚୟ ।"
ଏହା କହି ମୁନି ଚାଲି ଯାଉଥିଲେ,
ଜାଣିଲେ ସଙ୍ଗୀଦ୍ୱୟ,
ନିକଟ ଜାନଲେ ଫୁଲ ତୋଳୁଥିଲେ
ଲଭିଲେ ଘୋର ବିସ୍ମୟ ।



"ଯେଉଁ ପୂଜ୍ୟ-ପୂଜା— ଜୀବଚରମ-ଫଳ
ଯାଠାରେ ରଖିଛୁ ଲକ୍ଷ୍ୟ,"
ସେଂଠୋରେ ବଢ଼ିବ ନାହିଁ କୁ ଦେବଲେବେ
ଅପଣାର ପଥଚସ୍ତୁ !"

ଧାଇଁ ମହର୍ଷିଙ୍କ ପାଦ ତଳେ ପଡ଼ି
ଚତୁର କରି ବିନୟ,
ବୋଇଲେ, "ତାତ ହେ, କ୍ଷମ ଦୋଷ ହୋଇ
ବାଳିକା'ପ୍ରତି ସଦୟ ।"

ତାପସୀଙ୍କ ଅତି କାରୁଣ୍ୟରେ ହେଲା
ମୁନିଙ୍କ କୋପ ଶୀତଳ,
ଦାବ-ଦଗ୍ଧ-ଗିରି ଚୁଅଇ ଯେମନ୍ତ
ଲଭି କାଦମ୍ବିନୀ-ଜଳ ।

ବୋଇଲେ ମହର୍ଷି, "ଯାକୁ ଚାହୁଁଥିଲୁ
ଥିଲେ ତାକୁ ନଦର୍ଶନ,
ପୂର୍ବ ପରିଚୟ ପାଇବ ତାହାକୁ
ଦେଲେ ତାହା ପ୍ରଦର୍ଶନ ।"

ତାପସୀଏ ଶୁଣି ଫେରି ଚିନ୍ତିଲେ
"ଗୋଷ୍ପଦ-ସାଗର-ତଟ
ମିଳିଲା, ଏ କଥା ହେବ ନାହିଁ କହୁ
କୁମାରୀ-ପାଶେ ପ୍ରକଟ ।

କୁମାରୀକି ନୃପ ହେମ ଅଙ୍ଗୁରୀୟ
ଅଛନ୍ତି କରି ପ୍ରଦାନ,
ସେହି ଅଙ୍ଗୁରୀୟ କରିବ ତାହାଙ୍କ
ବିଲୁପ୍ତ-ସ୍ମୃତି ଉତ୍ଥାନ ।

ଅପୂର୍ବ-ନର୍ତ୍ତନେ          କଳକଣ୍ଠ-ଗାୟନେ
ସ୍ଫୂର୍ତ୍ତି ହେଲା ମଧୁମୟ,
ସୁର ବନ୍ଦୀଗଣ          ଉଚ୍ଚେ ଉଚ୍ଚାରିଲେ
"ଜୟ ପୁରୁବଂଶୀ ଜୟ ।"
ଅମରମଣ୍ଡଳୀରେ          ଯଯାତି ଉରସେ
ଅଭିଷେଚିଲେ ବାରମ୍ବାର,
ଅମରବଲ୍ଲଭ          ପୁଷ୍ପ ଅପି ଦେଲେ
ସ୍ୱର୍ଗୀୟ କୁସୁମ-ହାର ।
ଜୟନ୍ତଙ୍କ କୋଳୁ          ଓହ୍ଲାଇ ବାସବ
ଦୁଷ୍ମନ୍ତଙ୍କୁ କଲେ କୋଳ,
ନିଜ ବକ୍ଷ-ହାର          ଦେଲେ ତାଙ୍କ କଣ୍ଠେ
ମହାନନ୍ଦେ ହୋଇ ଭୋଳ ।
ପ୍ରେମ ପ୍ରୀତି ଭରେ          ଆସି ଶକଟରୁ
ଉତ୍ସବେ ଆଲିଙ୍ଗନ କଲେ,
ଆନନ୍ଦେ ବୋଇଲେ,          "ଯାଅ ନୃପ ସୁଖେ
ଲଭିବ ଅବଶ୍ୟ ଭଲେ ।"
ସୁରପତି-ପଦେ          ପ୍ରଣମିଲେ ନୃପ
ବିନୟେ ମେଲାଣି ମାଗି,
ମାତଲିର ରଥ          ଆଜ୍ଞା ଦେଲେ ତାଙ୍କୁ
ପହଞ୍ଚାଇଦେବା ଲାଗି ।

ଚଳେ ସୁରପୁର ନୃପ କର ଧରି
ଅଙ୍ଗରାଜାଙ୍କ ଦେଲେ ରଥେ,
ଆନନ୍ଦେ ବୋଇଲେ, "ଯାଅ ବତ୍ସ, ତବ
ବାଞ୍ଛା ସିଦ୍ଧ ହେଉ ପଥେ।"

ବାହୁଡ଼ିବା ପଥେ ନରପତି ଚଳେ
ଦର୍ଶନ ନନ୍ଦନ-ବନ,
ସ୍ୱର୍ଣ୍ଣ-କୁସୁମ- ବୀଥିରେ ପାଦପେ
ରଚିତ ହୋଇଛି ବର୍ଣ୍ଣ।

ଅମର-ଅକ୍ଷର ପଠନେ ଜାଣିଲେ
ରଚିତ ହୋଇଛି ଶ୍ଳୋକ,
"ଦୁଷ୍ମନ୍ତ ନୃପଙ୍କ ପୁଣ୍ୟ-ସୁରଭିରେ
ଆମୋଦିତ ଦେବଲୋକ।

ଦୁଷ୍ମନ୍ତଙ୍କ ଯଶ- ପଟ୍ଟଳ ଫୁଟିଛି
ନନ୍ଦନେ କୁସୁମ ଛଳେ,
ଉତ୍କୀର୍ଣ୍ଣ କନକ- ବର୍ଣ୍ଣ ହୋଇଅଛି
ମନ ତାଙ୍କ ପୁଷ୍ପଦଳେ।

ପବିତ୍ର ପ୍ରେମହିଁ ରହିଅଛି ସେହି
ପୁଷ୍ପଗର୍ଭେ ହୋଇ ମଧୁ,
ହିମଚନ୍ଦ୍ରରୂପେ ଆଶୀର୍ବାଦ ଚହିଁ
ଚାହୁଁଛନ୍ତି ବନ୍ଧୁବନ୍ଧୁ।"

ନିଜ ପ୍ରଶଂସା ଅଧିକ ନ ପଢ଼ି
ନୃପ ନେଲେ ବେଗେ ରଥ,
ସ୍ୱର୍ଗଦ୍ୱାର-ସ୍ଥଳେ ଓଙ୍କାର ଦେଖିଲେ
ଲିପି ଅଛି ଶତ ଶତ ।
ଶମ୍ଭୁ କପାଟଳ ଲେଖି ଦେଇ'ଛନ୍ତି
"ଧନ୍ୟ ଧନ୍ୟ ପୁରୁବଂଶ,"
ପଢ଼ି ଜଳେ ପଶି ଘୋଷୁ'ଛନ୍ତି ତାହା
ଅଗଣିତ ରାଜହଂସ ।
ଶୁଣି ଶୁଣି ତାହା ଜନ୍ମେ ଥରେ ପୁଣି
ବାସବ ସ୍ୟନ୍ଦନେ ବସି
ଚଳିଲେ ନୃପତି ମାତଳି ନିକଟେ
ନିଜ ଭାଗ୍ୟ ପ୍ରଶଂସି ।
ନିର୍ମଳ ମରୁତ- ମଣ୍ଡଳକୁ ଲଙ୍ଘି
ରଥ ପ୍ରବେଶିଲା ବେଗେ,
ଉଚ୍ଚ ପର୍ବତର ମସ୍ତକକୁ ଯହିଁ
ଚୁମ୍ବନ କରନ୍ତି ମେଘେ ।
ଜନ-ଦୃଷ୍ଟି-ପଥ- ପର-ଭାଗୀରଥୀ-
ନିର୍ମଳ-ସଲିଳ-କଣ
ପାନ କଲେ ସୁଖେ ପର୍ବତ-କନ୍ଦରୁ
ତାହାର ସ୍ତବକଗଣ ।

ଉତ୍ତର କାନ୍ତରେ        ଅସ୍ତଚଳୁ ହେଲା
ସୁବର୍ଣ୍ଣ ସ୍ତୂପ ସମୁଜ୍ଜ୍ୱଳ,
ତା ପଛେ ଦୃଷ୍ଟିରେ        ଅବରୁଦ୍ଧ ହେଲା
ଶ୍ୟାମଳ ଅବନୀ-ଅଞ୍ଚଳ ।
ପର୍ବତ-ଶିଖର        ଦିଶିଲା ଗଗନ-
ସୋପାନେ ଚଢ଼ିଲା ପରି,
ଭୂତଳ ଦିଶିଲା        ପର୍ବତକୁ ଯେସନେ
ଟେକ ଦେଉଅଛି ଧରି ।
ଅଥବା ବିଦର୍ଭ-        ବିଳାସୀ ନୃପତି
ପ୍ରତି ହୋଇ ମାନବତୀ
ଶଙ୍କଟ ନଙ୍କଟ        ହୈଲେ ଦୂର ଦୂର
ହୋଇଅଛି ବସୁମତୀ ।
କ୍ରମଶଃ ଦିଶିଲା        କେତୁ ସନ୍ଧତାରା
ମନ୍ତ୍ରୀଙ୍କ ମଧୁରଶ୍ୱାସ
ବୈଦଭ ଆଣୁଅଛି        ସ୍ୱର୍ଗପ୍ରତ୍ୟାଗତି
ପ୍ରଶଂସିତ ନୃପ ପାଶ ।
ପାଦପେ ମସ୍ତକ        ଉତ୍ତୋଳନ କଲେ
ଅବନୀ ଲୁଣ୍ଠନ ଛାଡ଼ି,
ସ୍ୱପ୍ନ ତ୍ରିହଙ୍ଗମେ        ଶିର ଟେକି ଯଥା
ଉଠିଥାନ୍ତି ଭେଣା ଝାଡ଼ି ।

ମର୍ତ୍ତ୍ୟରେ ପଡ଼ିଲା ହେମକୂଟ ଧାମେ
କି ପ୍ରକୃଷ୍ଟ ପରବତ,
ଗୋଧୂଳିକାଳୀନ- ଘନୀକୃତ-ଦୀପ୍ତ-
ମେଘସ୍ତୂପ ପ୍ରାୟେ ପ୍ରଭାବନ୍ତ ।
ବାସବ ତରୁଣ ସାଗର କଲ୍ଲୋଳେ
ଧୋଉଛନ୍ତି ଯାର ପାଦ,
ଉଦୟାସ୍ତ ରବି- ପ୍ରଦୀପେ ଆରତି
ଦେଇ ଗାଇ ସ୍ତୁତିବାଦ ।
କାଦମ୍ବିନୀ ଲଭି ଦିଗନ୍ତ ବିସ୍ତୃତ
ମଧୁମୟ ସ୍ପର୍ଶଣ
ଅଙ୍ଗରାଗରୂପେ ଅଙ୍ଗେ ଢାଳି ଯାଉ
ଭୁଲେ ତାର ବରଷଣ ।
ବାର ମାସ ଯହିଁ ବସନ୍ତ ବିଜରେ
ଫୁଟେ ସର୍ବବିଧ ଫୁଲ,
ମହାନନ୍ଦଭରେ ଭ୍ରମନ୍ତି ଭ୍ରମରେ
କୂଜନ୍ତି କୋକିଳ-କୁଳ ।
ପଦେ ପଦେ ଯହିଁ ସ୍ୱର୍ଣ୍ଣ-କମଳିନୀ
ଶୋଭା ବିକଶିତ କରେ,
ରତ୍ନରାଜି ଯହିଁ ଉମେର କାନ୍ତି
ବଲରଙ୍କ ସଙ୍ଗେ ସରେ ।

ସ୍ୱର୍ଣ୍ଣ-କମଳିନୀ-          ଅଙ୍ଗ ଛୁଇଁବାକୁ
    ଦିବାକର କର ଥରେଁ,
ମଧ୍ୟାହ୍ନେ ନନ୍ଦନେ          ଲୁଚ ଲୁଚ ତେଣୁ
    ପଡ଼ିଥାଏ ଛରେ ଛରେ ।
କଲଶୀ ଗାମ୍ଭୁନେ          ବିହଙ୍ଗ କୂଜନ
    ମାତ୍ର ବାଦ ହୁଏ ତହିଁ,
ବରଷା ବୋଇଲେ          ଭୃଙ୍ଗନ୍ତ ତହିଁରେ
    ତରୁ-ପୃଷ୍ଠ ବରଷାଇ ।
ଯେତେକରେ ଫୁଲ          ଫଳ ଉପୁଜଇ
    ତେତେକ ଅଛେ ତାହାର,
କନ୍ଦ ଫଳ ମୂଳ          ଚଳ ପଡ଼ଥାଏ
    ପୂରାଇ ଲୋକ ଉଦର ।
ତପସ୍ୱି-ମଣ୍ଡଳ          ତପ ସାଧୁଥାନ୍ତି
    ତହିଁ ରହି ନଗପଦେ,
ସିଦ୍ଧିହିଁ ସେ ସ୍ଥଳ          ନ ପାରନ୍ତି ଠେଲି
    ନଭ ଫୁଙ୍କା ଲଭି ପଦେ ।
ସୁରାସୁର-ପିତା          କଶ୍ୟପ ସେ ନଗେ
    କରନ୍ତି ସତୀଙ୍କ ବାସ,
ସୁରାସୁରଙ୍କର          ଲଳାଟ ତହିଁରେ
    ବଳଭୟ ଲଭି ଉଲ୍ଲାସ ।

ସମସ୍ତେ ଅଜାତ-                ଶତ୍ରୁ ଭ୍ରମ ପର୍ବତେ
ନିର୍ବଶଙ୍କ ଯେତେ ଜନ୍ତୁ,
ପରସ୍ପର ହିତ                ସାଧନେ ନିରତ
ହୋଇଥାନ୍ତି ଅଧିକନ୍ତୁ ।
କୁଶାଙ୍କୁର ଆଣି                ଶାର୍ଦ୍ଦୂଳ ସସ୍ନେହେ
ଦିଏ ମୃଗ-ଶିଶୁ ମୁଖେ,
ଗଜ-ଶିଶୁ ପାଇ                କେଶରୀ ହସ୍ତରୁ
କପିତ୍ଥ ଭୁଞ୍ଜଇ ସୁଖେ ।
ମାତଲିଙ୍କୁ ନୃପ                ସାଗ୍ରହେ ପୁଚ୍ଛିଲେ
ପର୍ବତର ପରିଚୟ,
ଶୁଣଂସି ମାତଲି                କହିଲ ଗିରିର
ମନୋରମ କଥାଚୟ ।
କଶ୍ୟପ ଚରଣେ                ଅର୍ଚ୍ଚିବାକୁ ନୃପ
ରଥ ଓହ୍ଲାଇଲେ ତଳେ,
ଦେଖିଲେ ସ୍ୟନ୍ଦନ                ଗଗନେ ଯେସନ
ଭୂତଳେ ତେସନ ଚଳେ ।
ଚକ୍ର ନ ଘଷଇ                ଧୂଳି ବାଲି ମଧ୍ୟେ
ନ ଜାଣେ ଅସମ ତଳେ,
ଚଳେ ଯଥା ହଂସ                ଅବାତ-ରକ୍ଷିତ
ଗମ୍ଭୀର-ସରସୀ-ଜଳେ ।

ଚହିଁଲଟି ନୃପ    ସାରଥି ବଦନ
ଅନାଇଲେ ତମହିଁଆଡେ,
ସୁରେନ୍ଦ୍ର ନରେଶ    ରଥ ତାରତମ୍ୟ
ଜ୍ଞାତ ହେଲେ ସୈନ୍ଧଠାରେ ।
ଅଦୂରେ ଦେଖିଲେ    ମୁନି ଏକ 'ଛନ୍ତି
ନିଶ୍ଚଳ ଅଚଳରୂପେ;
ପାଦୁଁ କଟିଯାଏ    ତାହାଙ୍କ ନକ୍ଷିତ
ହୋଇଛି ବଲ୍ମୀକ-ସ୍ତୂପେ ।
ବକ୍ଷଧର-ଚର୍ମ    ଉପବୀତସମ
ହୋଇଅଛି ଉପବୀତ,
ଜୀର୍ଣ୍ଣ-ଲତା-ଜାଲ    ବେଢ଼ି କଣ୍ଠ-ଦେଶ
କରୁଅଛି ନପୀଡ଼ିତ ।
ଭବ-ଅଦ୍ଧମୁଗୀ    ହୋଇ ସ୍ଥାଣୁ ସମ
ରହିଛନ୍ତି ମୁନିବର,
ସ୍କନ୍ଧ-ବିଲମ୍ବିତ    ଜଟା-ମଣ୍ଡଳରେ
ପକ୍ଷୀ କରିଛନ୍ତି ଘର ।
ରଥୁଁ ଅବତରି    ନରପତି ସେହି
ମୁନିଙ୍କି ପ୍ରଣାମ କରି
ଆଶ୍ରମ-ଦର୍ଶନ-    ସୁଖ-ପୀୟୂଷରେ
ମନ ପ୍ରାଣ ଦେଲେ ଭରି ।

ଚଣ୍ଡମୁ-ବଷସା ।

ଦେଖିଲେ ଆଶ୍ରମ କଳ୍ପ-ପାଦପ-
'ଛାୟା-ସୁଶୀତଳ-ତଳ,
ସୁଲଭ ତହିଁରେ ହେମ-କମଳଗ-
ସୁରଭି-ବାସିତ-ଜଳ ।

ପଥର ପଟ୍ଟଏ ପଢ଼ ରଖିଅଛି
ଯହିଁ ତହିଁ ମଣି ଟିଳା,
ସ୍ନେହ ବରଷଣ କରୁଛନ୍ତି ବୁଲି
ସୁରବାଳା ସ୍ନେହଶୀଳା ।

ସୁର-ବନିତାଙ୍କ ଗତ ଗୀତ ଦେଖି
ସ୍ୱତଃ ହେଲା ନୃପ ମନେ,
ବନ୍ଦନ୍ତେ ଚରଣ, ତୋଷନ୍ତେ ଶ୍ରବଣ
'ମାଆ' ଶବ୍ଦ ସମ୍ବୋଧନେ ।

ହେମନ୍ତ ତପସ୍ୟା— ଫଳ-ଫୁଲେ ପୂର୍ଣ୍ଣ
ତପସ୍ୟା ରହୁଛି ଲାଗି,
ବୋଲିଲେ ନୃପ ସେହୁ ତାପସଙ୍କ
ତପ ନୁହେ ନିଜ ଲାଗି ।

ସ୍ୱର୍ଗରୁ ଅଧିକ ମନୋରମ ପୂର୍ଣ୍ଣ
ସୁଖକର ଏହି ସ୍ଥଳ,
ଅବଶ୍ୟ ଜଗତ— ଜନ-ଭୋଗ୍ୟ ହେବ
ଏଠାର ତପସ୍ୟା-ଫଳ ।

ନିଜ ପାଇଁ ଲୋକେ          ତପ କରି ଥାନ୍ତି
        ଦୁଃଖ ପରେ ସହି ଦୁଃଖ,
ପର ସୁଖ ପାଇଁ          ତପ ସାଧନାରେ
        ତ୍ୟକ୍ତ ହୋଇଥାଏ ସୁଖ ।
ଚନ୍ଦ୍ର ଉପରକୁ          ଉଠିଥିବା ଲୋକ
        ଜାଣିଥାଏ ତଳ କଥା,
ଉଚ୍ଚାସନେ ଥାଇ          ଯତ୍ନ କରିଥାଏ
        ହରିବାକୁ ତଳ ବ୍ୟଥା ।
ମୋ' ପ୍ରଜା ଜଗତେ          ବଢ଼ଇବାପାଇଁ
        ହେଉଛି ଏଠାରେ ମନ,
ନିଜ ସୁଖ ଛାଡ଼ି          ଏକାକୀ ଭୁଞ୍ଜିବେ
        ସ୍ୱର୍ଗ-ଭବିଷ୍ୟ-ଜନ ?
ଶକ୍ର-ସୂତ ଗଲା          ସେଠାରୁ କଶ୍ୟପେ
        ସମାଚାର ଦେବାପାଇଁ,
ଅଶୋକ-ପାଦପ-          ତଳେ ନରପତି
        ରହିଲେ କାନନ ଗୃହିଁ ।
"ଛାଡ଼ ଛାଡ଼ ଦୁଷ୍ଟ,          ଛାଡ଼ ରେ" ଶବଦ
        ପଶିଲା ନୃପତି କର୍ଣ୍ଣେ,
ଦେଖିଲେ କେଶର —          ଶାବକ-କେଶର
        ଧରିଛି ବାଳକ ଜଣେ ।

ଚମକିତ ହୋଇ          ହସ୍ତିନାନୃପତି
ବାଳକର ପରାକ୍ରମେ
କୌତୁକଦର୍ଶନ          ମାନସେ ତାହାର
ସମୀପକୁ ଗଲେ କ୍ରମେ ।
ତାପସୀଏ ମୁଣି          ବୋଇଲେ ଶିଶୁକୁ,
"ଛାଡଦିଅ ଅରେ ଦୁଷ୍ଟ,
ବାଳ-ଚପଳତା          ଛାଡ ଯିବ ତୋର
କେଶରଣୀ ହେଲେ ରୁଷ୍ଟ ।
ଏ କି ଦୁଃସାହସ,          ସିଂହଶିଶୁ ସଙ୍ଗେ
କରୁଥିଲା ସ୍ତନ୍ୟପାନ,
ବଳେ ଅଣି ତାର          ଦନ୍ତ ଗଣୁଅଛୁ
କହୁଛୁ କି ମୃଗ ଜ୍ଞାନ ?"
ଅଧର ଲମ୍ବାଇ          "ଏତକେ କହିଲି"
ବୋଲି ଉପହାସ ଛଳେ
କେଶରୀ-ଶାବକ—          କେଶରକୁଞ୍ଚିଶୁ
ଧଇଲା ଅଧିକ ବଳେ ।
ଅନ୍ୟ ତପସ୍ୱିନୀ          ବୋଇଲା, "ସଜନି,
କେବେ କି ସେ ଥାଏ ରହଇ,
ସ୍ଥଳ ମୁଣ୍ଡୁଁ ସର୍ବ—          ଦମନ ନାମ ସେ
ପାଅନ୍ତା ଅଛି କି ତହି ?"

ସଙ୍କେତ୍ରେ ବୋଇଲା, କ୍ରୀଡ଼ାଦ୍ରବ୍ୟ ଦାନ
ପ୍ରଲୋଭନେ ତାଙ୍କୁ ଶୀଘ୍ର,
ନ ହେଲେ କେଶର— ଶାବକକୁ ଧର
ଦେଉଥିବ କେଟେ ଦଣ୍ଡ ।
ପ୍ରଥମା ବୋଇଲା, “ମୃଗେନ୍ଦ୍ରଶାବକ
ଛାଡ଼ ଦିଅ ମୋର ବାପ,
ସୁତ କଷ୍ଟ ଶୁଣି ଜନନୀ ତାହାର
ମନେ ଲଭୁଥିବ ତାପ ।
ଖେଳିବା ନିମନ୍ତେ ମୋହଠାରୁ ଏବେ
ଅନ୍ୟ କ୍ରୀଡ଼ନକ ନିଅ ।”
ତା ଶୁଣି ବାଳକ କର ପ୍ରସାରିଲା
କହ, “ଦିଅ ଦିଅ ଦିଅ ।”
ଚାହିଁଲେ ନୃପତି ଶିଶୁ-ହସ୍ତ ଯେସନେ
ନବ-ବିକସିତ-ପଦ୍ମ,
ଚକ୍ରବର୍ତ୍ତୀ-ଚିହ୍ନ— ସକଳ ତହିଁରେ
ରହିଛନ୍ତି କରି ସଦ୍ମ ।
“ଆଣୁ ଅଛି” ବୋଲି ଉଦ୍ୟମି ତାପସୀ
ସତ୍ୱର ସେଠାରୁ ଗଲେ,
“ଆସିଲେ ଛାଡ଼ିବ” ବୋଲି ଶିଶୁ ସହ—
ଶିଶୁକୁ ଧରିଲା ବଳେ ।

ମାର୍ଗେ ତାପସୀଏ  ଲେଉଟି କହିଲା
ନୃପତିଙ୍କ ମୁଖ ଚାହିଁ,
"ଦେଖ ମହାଶୟ,  ଏ ଦୁଷ୍ଟ ବାଳକ
ହରିଣ ଶିଶୁ ଛାଡ଼ୁ ନାହିଁ ।"

କୁମାରକୁ ଚାହିଁ  ନୃପଙ୍କର ହୃଦ
ହୋଇଥିଲା ଦ୍ରବୀଭୂତ,
ମନେ ବୋଲୁଥିଲେ,  "ଧନ୍ୟ ସେହି ଲୋକ,
ଏ ଶିଶୁ ଯାହାର ସୁତ ।

କୋଳେ ଧରି ମୁଖେ  ଚୁମ୍ବନ ଦେବାକୁ
ହେଉଅଛି ମୋର ଚିତ୍ତ,
କେମନ୍ତେ ମୋ ସ୍ନେହ  ସେହବ ବାଳକେ
ମୁଁ ଯେ ତା ଅପରିଚିତ ।

ଦରଶନ ଯାର  ଏତେ ସୁଖକର
ଶ୍ରବଣ କେତେ ମଧୁର !
ଶ୍ରବଣ-ଲାଳସା  ଲାଗିଛି କର୍ଷିଣ-
ସ୍ପର୍ଶ କରିବାକୁ ହୁର ।"

ଶ୍ରବଣ-ଲାଳସା  ଦରଶନ-ସୁଖ-
ପଟେ କରି ଘୋର ଯୁଦ୍ଧ
ନୃପତି-ହୃଦୟ-  ସମର-ଭୂମିକୁ
କରିଦେଲେ କ୍ଷଣେ କ୍ଷୁବ୍ଧ ।

ନୃପତି ବୋଇଲେ, "ତାପସକୁମାର,
କର୍ପା ଏଡ଼େ ହରିବସି,
ସିଂହ-ଶିଶୁ ସହ ଖେଳିବ ତେଜ
ତାପସ ସ୍ୱଭାବ ଧୀର ।"

ନୃପଙ୍କୁ ତାପସୀ ବୋଇଲା, "ଏ ଶିଶୁ
ତାପସନନ୍ଦନ ନୁହେ,"
ନୃପତି ବୋଇଲେ, "ତାପସ ମଣ୍ଡିଳ
ଥିବାରୁ ତାପସ ଗୃହେ ।"

ତା ପରେ ନୃପତି ସ୍ନେହସହକାରେ
ଧରି ବାଳକର କର
ହୃଦ-କ୍ରୋଡ଼ ସହ କେଶରି-ଶିଶୁକୁ
ଲଗାଇଦେଲେ ଅନ୍ତର ।

ଦ୍ରବୀଭୂତ ସ୍ୱର୍ଣ୍ଣ- ଖଣ୍ଡଦ୍ୱୟ ଯଥା
ମିଶି ହୁଏ ଏକ ଦେହ;
ସ୍ନେହର ବାଳକ ନୃପେ ମିଶିଗଲା
ପାଇ ମଧୁମୟ ସ୍ନେହ ।

ନୃପ ସହ ସଙ୍ଗ- ବଦନର ଛନ୍ଦ
ଏକରୂପ ଏକାକାର,
ତାପସୀ ହୃଦୟେ ଆହ୍ଲାଦ ସହିତ
ନୃତ୍ୟକଲା ଚମତ୍କାର ।

ଶିଶୁ କର ଧରି ସ୍ନେହା ଭରି ଭରି
ହର୍ଷିତ ମନ ଅନୁଭବ
ବୋଇଲେ, "ସ୍ୱାମୀଜେ, ଏ କୁମରମଣି
କେଉଁ ବଂଶେ ସମ୍ଭୂତ ?"
"ପୁରୁବଂଶେ" ଏହି ଉତ୍ତର ଶ୍ରବଣେ
ପୁଣି ଚିନ୍ତଇଲେ ମନେ,
ପୁରୁବଂଶମାନେ ଚରମ-ସମୟେ
ବାସ କରଥାନ୍ତି ବନେ ।
ପୁଣି ପଚାରିଲେ, "ଏ ସ୍ଥାନକୁ ହୋଇ
ପାରେ କି ମାନବ ଗତି ?"
ଉତ୍ତର ପାଇଲେ, "ସେ ବିଧି ନ ଖଟେ
ଶିଶୁର ଜନନୀ ପ୍ରତି ।
ଦେବଗୁରୁ-ବଂଶ- ଗରଭ ସମ୍ଭୂତା
ଶିଶୁର ଗର୍ଭ-ଧାରିଣୀ,
ଭାଗ୍ୟ-ଦୋଷେ ଅଛି ପୁଣି ତାହାଙ୍କର
ହୋଇ ଏ ବନଚାରିଣୀ ।"
ଭାବିଲେ ନୃପତି, "ଆଶା-ମରୀଚିକା
ଧରୁଅଛୁ କ୍ଷୁଦ୍ରାକାର,
ଜଣାଯିବ ଏବେ ଅଛି କି ନାହିଁ ବର୍ଣ୍ଣ
ପ୍ରବେଶର ଅଧିକାର ।"

ବିସ୍ମୟେ ବୋଇଲେ, "ବାଳକର ପିତା-
ନାମ କସ ଅଛ ଜାଣି ?"
ତାପସୀ ବୋଇଲା, "ଅଧାର୍ମିକ ନାମ
ଉଚ୍ଚାରିବା ଏଥି ମନା ।"
ଜନନୀର ନାମ ଜାଣିବାକୁ ନୃପ
କରୁଥିଲେ ଅଭିଳାଷ,
ଭାବିଲେ, ତା ହେଲେ ହେବ ଏହା ପିତା
ଅବଶ୍ୟ ପରକାଶ ।
ଅପର ତାପସୀ ମୃତ୍ତିକା-ମୟୂର
ଏକ ଆଣି ଧରି କରେ,
ବୋଇଲା ଶିଶୁରୁ, "ଶକୁନ୍ତ ଲାବଣ୍ୟ
ଦେଖ ଦେଖ ବତ୍ସ ! ଥରେ ।"
"ଶକୁନ୍ତଳା" ଶୁଣି ବୋଇଲା ବାଳକ,
"କାହିଁ ମୋ ଜନନୀ କାହିଁ ?"
ତାପସୀ ବୋଇଲା, "କହୁଛି ସୁନ୍ଦର
ମୟୂର ଦେଖିବାପାଇଁ ।"
ନୃପ ବିଚାରିଲେ, ଶିଶୁର ଜନନୀ-
ନାମ ହେଲା ଶକୁନ୍ତଳା,
କେତେ ଭାଗ୍ୟବତୀ ସେ ନାମ ବହନ୍ତି
ତା ସେନ୍ଥ ଦ୍ୱିଧା ନ ଗଲା ।

ମୃତ୍ତିକା-ମୟୂର ଧରିଲା ବାଳକ
ଧାଇଁ ତପସ୍ୱିନୀ ପାଶ,
ସନ୍ତୋଷ ସୂଚନା କଲା ତା ଅଧରେ
ଫୁଟି ମଧୁ ମନ୍ଦ ହାସ ।
ଦେଖିଲା ନୃପତି, ଶିଶୁ-ମଣିବନ୍ଧେ
ରକ୍ଷା-କାଣ୍ଡ ତାର ନାହିଁ,
କାହିଁ ପଡିଗଲା ବୋଲି ଅନ୍ବେଷଣ
କଲା ଇତସ୍ତତଃ ଚାହିଁ ।
ଏଣେ ନରପତି ରକ୍ଷା-କାଣ୍ଡଟିକୁ
ଭକ୍ତି ଉଠାଇଲେ କରେ,
"ଛୁଅଁନା ଛୁଅଁନା" ବୋଲି ତପସ୍ୱିନୀ
କହୁଁ କହୁଁ ତରତରେ ।
ଚାହିଁ ତପସ୍ୱିନୀ- ଯୁଗଳ ଚକ୍ଷୁରେ
ବକ୍ଷସ୍ଥଳେ ଦେଇ ହସ୍ତ
ଉଚ୍ଚ ଦୁଦେ ଲର "କ ହେଲା କ ହେଲା"
ବୋଲି ହେଲେ ମହାବ୍ୟସ୍ତ ।
ନୃପତି ବୋଇଲେ, "କସ ହେଲା କାହିଁ-
ପାଇଁ ଏତେ ଉଦବଗ୍ନ,
ମୋହୋ ପରଶରେ ଶିଶୁ-ରକ୍ଷାର
ମଙ୍ଗଳେ ହେବ କି ବିଘ୍ନ ?"

ତାପସୀ କହିଲେ, "ଅମଙ୍ଗଳ କଛ
ନାହିଁ ଶିଶୁରକ୍ଷଣର,"
ପିତା ବିନା ଅନ୍ୟ— ହସ୍ତକୁ ଗଲେ ତା
ହୋଇଥାଏ ବିଷଧର ।
ତେଣେ ଶିଶୁ ଅବା ଜନନୀ ତାହାର
କରିପାରେ ତା ଗ୍ରହଣ;
ଅନ୍ୟ ଲୋକ ତାହା ଗ୍ରହଣ କରିବା
କେବଳ ମୃତ୍ୟୁ କାରଣ ।
ଜାତକର୍ମବେଳେ ଶିଶୁ କରେ ଦେଇ
ଥିଲେ ତା ବାସବ ପିତା,
ଅଶୁଭ-ନାଶକ ସିଦ୍ଧ-ମହୌଷଧ
ନାମ ତା 'ଅପରାଜିତା' ।"
ନୃପତି କହିଲେ, "ଅନ୍ୟ କରେ ଯାଇ
ପ୍ରାଣ ନାଶିଛି କି କାର ?"
ତାପସୀ କହିଲା, "ଥରେ ନୁହେଁ ତାହା
ଘଟିଅଛି ବହୁବାର ।"
ନୃପତି ଭାବିଲେ, "ଏତେ ପ୍ରମାଣରୁ
ଆଉ କି ଅଛି ସଂଶୟ,
ନିଶ୍ଚୟ ବାଳକ ମୋହୋ ପ୍ରଣୟିନୀ—
ଶକୁନ୍ତଳାର-ତନୟ ।"

"ମୋ ପୁତ୍ର ମୋ ପୁତ୍ର" ବୋଲି ବାଳକକୁ
ଧରି କଲେ ଆଲିଙ୍ଗନ,
ଆନନ୍ଦ-ଜନିତ ଲୋତକେ ନୃପଙ୍କ
ଭିଜିଗଲା ଅପଘନ ।

ବାଳକ ବୋଇଲା, "ଛାଡ଼, ଛୁଅଁ ଆସି
ଏମନ୍ତ ଦୁଷ୍ଟ ମୋ କତି,
ତୁମ୍ଭେ ନୁହ ମୋର ଜନକ, ମୋ' ପିତା
ଦୁଷ୍ମନ୍ତ ହସ୍ତିନା-ପତି ।"

ବାଳକ ଆପତ୍ତି ନ ଶୁଣି ନୃପତି
ଚୁମ୍ବ ଦେଲେ ବାରମ୍ବାର,
ତା ଗୃହିଁ ବାଳକ, ଗୃହିଁ ତାପସୀଏ
ମଣୁଥାନ୍ତି ଚମତ୍କାର ।

ଆନନ୍ଦ ଉପରେ ଆନନ୍ଦ ନୃପଙ୍କ
ହୃଦୟରେ କଲା ନୃତ୍ୟ,
ମନ ସହିତରେ ଜୀବନ ଭିକ୍ଷିସି
ହୋଇଗଲେ କୃତକୃତ୍ୟ ।

ତାପସୀଏ ଯାଇ କହିଲେ ସେ କଥା
ସବୁ ଶକୁନ୍ତଳା ପାଶ,
ଶକୁନ୍ତଳା ଆଶା ସହ ସମ୍ମିଳିତ
ନ ହେଲା କରୁ ବିଶ୍ୱାସ ।

ଶକୁନ୍ତଳା ଆସି ସ୍ନେହେ ଦେଖିଲେ
ପୁତ୍ର ଅଛୁ ପିତା ଅଙ୍କେ,
ଉଠିଗଲେ ହର୍ଷ— କମଳ-ମଣ୍ଡିତ
ବଦନ-ବିଷାଦ-ପଙ୍କେ ।

ଚକିତେ ବିସ୍ମୟେ କୁମାର ବୋଇଲା
ଜନନୀ-ବଦନ ଚୁମ୍ବି,
"ମା ଗୋ, ଏହୁ ଲୋକ ପୁତ୍ର ବୋଲି ମୋତେ
ଧରୁଛନ୍ତି କାହିଁ ପାଇଁ ?
ବାରମ୍ବାର ମୋତେ କୋଳ କରୁ'ଛନ୍ତି
ଯେଣୁ ନାହାନ୍ତି ମୋ' ମନା,
ଦେଖ ତ କାହିଁକି ହୋଇ ଯାଉ'ଛନ୍ତି
ଏମନ୍ତ ଉପତମନା ।"

କହ କହ ଶିଶୁ ଏକ କର ନେଇ
ଧଇଲା ଜନନୀ କର,
ଅପର ହସ୍ତଟି ରହିଥିଲା ସ୍ନେହେ
ବନ୍ଧେ ନରପତିଙ୍କର ।

ନ ଚଏ ନୃପତି କରୁଁ କର ଶିଶୁ
ନ ଛାଡ଼ି ଜନନୀ କର,
ଆକର୍ଷଣେ ଦୁଃଖ ଛଡ଼, ସୁଖ ବୃଦ୍ଧି
କରିଦେଲା ଦୁହିଙ୍କର ।

କେତେ କାହା କଥା                    କହିବାକୁ ଆଉ
        ହେଲା ନାହିଁ ଅବସର,
ଭଗୀରଥ ହୋଇ                    ମିଳାଇଲା ଶିଶୁ
        ସୁରଧୁନୀ ରତ୍ନାକର ।
କୁମର କରରେ                    ଶକୁନ୍ତଳା ପ୍ରାଣ
        ହୋଇଗଲା ସୁଧାସ୍ନାତ,
କାନ୍ତ ଦରଶନେ                    ପୁଲକ ଛଳରେ
        ହେମାଙ୍କୁର ହେଲା ଜାତ ।
ହାସ ଆ ଅଧରେ                    ନ ଫୁଟି ବଦନେ
        କେତେ ହେଲା ସଞ୍ଚାରିତ,
ନୟନ ମୁଦ୍ରିତ—                    ଜଳ ବାହାରିଲୁ,
        ଝୁଏଁ ଯଥା ଫକ୍ଷରିତ ।
ଲୁଟିଥିଲା କାମା                    ମାତା ଲଗି ତାର
        ସଁ'ଚ୍ର ପକ୍ଷ-ବରଭ,
ପକ୍ଷ-ପ୍ରେମ ମୁଁ                    ଦର୍ଶନ ଲାଲସେ
        ଥାଏ ଛଡ଼ି ଅହରହ ।

ମନେ ଭାବୁଥାଏ                    ପ୍ରଣୟୀ ପାଳନେ
        ହୋଇଛି କନେ ଅକ୍ଷମା,
ପଛ ଦରଶନ                    ଲଭିଲେ ଚରଣେ
        ଚଳନ୍ତେ ମାଗନ୍ତା କ୍ଷମା ।



କେହୁ କାହା କଥା ଉହୁବାକ୍ ଅଇ
ହେଲ ନାହିଁ ଅବସର,
ଭର୍ଗାଳିଥ ହୋଇ ମିଳାଇଲ ତୈଁ
ସୁରଥ୍‌ଲ ଲକ୍ଷ୍ମୀବର ।

ସ୍ଥିତା ଭରୁଥିଲେ        ପ୍ରେମ-ମୂରତିକି
ପ୍ରଣୟ-ପୀଠେ ଆରଧି
କି ପାଇ ଧରମ        ଲଂଘି ହଲେ ଦୋଷୀ
ହନ୍ତି ମହା ଅପରାଧୀ ।

କେଉଁ କଥା କହ        କେମନ୍ତେ ପାଳକ
କରାଇବେ ନାଙ୍କ ଦୋଷ,
ଅଙ୍ଗୁରୀୟ ଲାଭ        କଥା କହିଲେ କି
କମିବ ପ୍ରିୟାର ରୋଷ ?

ଛଅ ବରଷର        ବିରହ ଯାତନା
କେଉଁଆଡ଼େ ଗଲା ଉଡ଼ି,
ପରସ୍ପର ମୁଖ        ଦେଖି ସୁଖାମୃତ-
ପାରବାରେ ଗଲେ ବୁଡ଼ି ।

କୁମାର-ଚନ୍ଦ୍ରମା        ତହିଁ କି ଉଲ୍ଲାସେ
ବଢ଼ାଇ ଦେଇଛି କର,
ଲହରୀ ଉପରେ        ଲହରୀ ମେଲିଲା
ଦମ୍ପତି-ସୁଖ-ସାଗର ।

ପବିତ୍ର ଦମ୍ପତି-        ପ୍ରେମ ସୁଖ ଗୃହେଁ
ଟିକି ହେଲା ପୁଲକିତ,
ଫୁଟିଗଲା ଫୁଲ—        କଳିକା, ଫୁଟିଲା-,
କୁସୁମ ହେଲା ସୁରଭିତ ।

ନବୀନ ଆନନ୍ଦେ     ବିହଙ୍ଗମଗଣ
ଦିଲେ ମଧୁମୟ ଗାନ,
ସ୍ୱର୍ଗୀୟ ଯାନ ଦେଖି     ଆନନ୍ଦେ ନାଚିଲେ
ହରିଣ ଶାବକମାନ ।

ଏମନ୍ତ ସମୟେ     ସୁରପୁର-ଗୁରୁ
'ହେଲେ ତହିଁ ଉପଗତ,
ଚରଣେ ତାଙ୍କର     ପଡ଼ିଲେ ତନୟେ
ଯୁକ୍ତ ଯୁକ୍ତ କରି ହସ୍ତ ।

ହସି ମହାମୁନି     ଆଶିଷିଲେ, "ତୁମ୍ଭ
ସର୍ବ ଦୁଃଖ ହେଉ ଅସ୍ତ,
କୁମର-ରତନ     'ହେଉ ତୁମ୍ଭ କୁଳେ
ବୁଦ୍ଧିଶୀଳ-ଧୈର୍ଯ୍ୟଧର୍ମ୍ମମୟ ।

ଉଦୟାଶା କୋଳୁଁ     ଉଦୟ ଭୂଧର
ମଣ୍ଡିଅଛି ଦିନମଣି,
ନାଶି ହେଲା ତୁମ୍ଭ     ବିଷାଦ-ତିମିର—
ଅଦ୍ଭୁତ-ଶୋକ-ରଜନୀ ।"

ସାଦରେ ସସ୍ନେହେ     ମହାମୁନି ତାଙ୍କୁ
ନେଇ ଅଦିତିଙ୍କ ପାଖ,
କଲେ ଶକୁନ୍ତଳା—     ପତି-ନୃପତିଙ୍କ
ପରିଚୟ ପରକାଶ ।

ପତ୍ନୀ-ପୁତ୍ର-ସହ ବନ୍ଦନ୍ତେ ନୃପତି
ବନ୍ଦିଲେ ଅଦିତି ପାଦ,
ଅଦିତି ତାହାଙ୍କୁ ଆନନ୍ଦେ ମନ୍ତ୍ରେ
ଦେଲେ ଶୁଭ ଆଶୀର୍ବାଦ ।

ଦଳ ଦଳ ଆସି ଦେଖିଲେ ନୃପଙ୍କୁ
ତାପସ ତାପସୀଗଣ,
କେହି ସୁର କେହି ନର ବୋଲି ତାଙ୍କୁ
କଲେ କେତେ ବତର୍କଣ ।

ନୃପତିଙ୍କି ଚାହିଁ କଶ୍ୟପ ବୋଇଲେ,
"ନ କରନ୍ତୁ ଅନୁତାପ,
ତୁମ୍ଭ ସ୍ମୃତି-ଲୋପ କରି ଦେଇଥିଲା
ଦୁର୍ବାସା ମୁନିଙ୍କ ଶାପ ।

ଉଦ୍ଭାବିତ ହୋଇ— ଥାନ୍ତା ପୁଣି ସ୍ମୃତି
ଯେଉଁ ଅଙ୍ଗୁରୀୟ ବଳେ;
ଶକୁନ୍ତଳା ସ୍ନାନ- କାଳେ ହରାଇଲା,
ତାହା ଶଚୀତୀର୍ଥ ଜଳେ ।

ତୁମ୍ଭ ପ୍ରତି ତାର ମନ ରହିଥିଲା
ତୁମ୍ଭ ପଦେ ଥିଲା ଧ୍ୟାନ,
ଆଶ୍ରମେ ସ୍ତମ୍ଭିତା ଋଷି ପଡ଼ିବାର
ତୁଟି ନ ରହିଲା ଜ୍ଞାନ ।

ଜଳେ ଖେଳୁଥିଲା          ମୀନ ତା ଆକାର
ଚିହ୍ନର ଭକ୍ଷଣ କଲା,
ଧୀବର ସେ ମୀନ          ମାରନ୍ତେ ମୁଦ୍ରିକା
ତୁମ୍ଭ ସନ୍ନିଧକୁ ଗଲା ।

ଶକୁନ୍ତଳା ମାତା          ଦୁହିତା ବିପଦ-
ସମୟ ପ୍ରବେଶ ବୁଝି
ଦୁହିତାକୁ ଆଣି          ନେଇଗଲା ଅମ୍ଭ
ଆଶ୍ରମେ ରଖିବାପାଇଁ ।

ଦେଖୁଛ ତ ଏହୁ          ପ୍ରାଣିର ପ୍ରଭାବ
ଏଥି ନାହିଁ କ୍ଷୋଭ ତାପ,
ତୁମ୍ଭ ବ୍ୟବହାରେ          ହୋଇ ନାହିଁ ମଧ୍ୟ
ସତ୍ୟ ପ୍ରତି ଅପଲାପ ।

ଅଧିକନ୍ତୁ ଯୋଗ          ଅନୁତାପେ ତୁମ୍ଭ
ମହିମା ଯାଇଛି ବଢ଼ି,
ତାହା ଯୋଗୁଁ ପୁଣି          ଅବଜ୍ଞାର ଦୋଷ-
ଖାଇ ଯାଇଅଛି ପଡ଼ି ।

ପତ୍ନୀ ପୁତ୍ର ଘେନ          ଯାଅ ଏବେ ସୁଖେ
ଅବନୀ ପାଳନ କର,
ତୁମ୍ଭ ପରି ପତି          ଦଣ୍ଡିବ ପ୍ରଜା
ଅଛୁ ଦୁଃଖ-ଜରଜର ।"

ସାଷ୍ଟାଙ୍ଗ-ପ୍ରଣାମ କରି ନରପତି
ମହର୍ଷି-ଦମ୍ପତି-ପଦେ
ପତ୍ନୀ ପୁତ୍ର ସହ ଛାଡ଼ି ଦୂର ଶୃଙ୍ଗ-
ଗଲେ ସେ ଆଶ୍ରମଖଣ୍ଡେ ।

ଚଢ଼ି ରଥେ ବସି କୁମାରମଣିଙ୍କ
କୋଳେ ବସାଇଲେ ନେଇ,
ପାଶେ ବସାଇଲେ ଲକ୍ଷ୍ମୀମଣିଙ୍କ
କରପଦ୍ମେ କର ଦେଇ ।

ମାତଳି ଚାଳିଲେ ବାସବ-ସ୍ୟନ୍ଦନ
ମୁହୂର୍ତ୍ତ ମଧ୍ୟରେ ଆସି
ହସ୍ତିନା ନଗର ରାଜପଥେ ଦେଲା
ଦିବ୍ୟ ଶୋଭା ପରକାଶି ।

ପୁରବାସିଗଣ ଶୁଣି ଜୟନାଦେ
ଗଗନ କମ୍ପିତ କଲେ,
ମାତଳି ସାଷ୍ଟାଙ୍ଗ କରି ବନ୍ଦନ
ଅନ୍ତର୍ଦ୍ଧାନକୁ ଗଲେ ।

ପାଟରାଣୀ ହେଲେ ଶକୁନ୍ତଳା ତାଙ୍କ
ପୁତ୍ର ହୋଇଲେ ପାଟରଜା,
ଦୂର ଦିଗନ୍ତରେ ବାଜିଗଲା ରଜା-
ରାଣୀଙ୍କ ସୁଯଶ-ବାଜା ।

ଏକପ୍ରାଣ ହେଲେ          ନୃପତି-ଦମ୍ପତି,
ଭିନ୍ନ ମାତ୍ର ଥିଲା କାୟା,
ସ୍ନିଗ୍ଧ କରୁଥିଲା          ଜୀବନକୁ ସଦା
ପବିତ୍ର ପ୍ରଣୟ-ଛାୟା ।






Printed by V. Kar. The Utkal Sahitya Press, Cuttack.

ବିଶେଷତଃ ତର୍କେ ହୋଇଛି ଜର୍ମନେ
ଗୁସ୍ତନ୍ତ ନାମ ହର୍ଲାଣ୍ଡ,
ଜନ୍ମସ୍ଥ ହୋଇ ସେ କର ଦେବ ତାଙ୍କ
ପ୍ରଣୟ-ବନ୍ଧନ ଛିନ୍ନ ।"

ସଖୀଏ ବୋଇଲା, "ସଖି, ଏକ କଥା
ସଂଶୟ ଆସୁଛି ମନେ,
ଗୁରୁ ଭୁଲ ଅର୍ଥ ଦେଉଥିଲେ ତାଙ୍କ
ସନ୍ଦେହ ଜନ୍ମ କରନେ ।

ଯଦି କୁମାରୀର ପ୍ରତିକୂଳେ ନୃପ
ଜାଣନ୍ତି ସବୁ ଅର୍ଥ,
ତେବେ ତ କୁମାରୀ କଳଙ୍କ-ସାଗରେ
ଜୀବନ କରିବ ବ୍ୟର୍ଥ ।"

ଅପରା ବୋଇଲା, "ମନ୍ଦ ତେଜ ଭଲ
ଭଲ ଦେଉଥାନ୍ତି ସନ୍ତ,
ମନ ଚଳନରେ କର୍ମର ଏକତା
ଲଗାନ୍ତି ତର୍କବନ୍ତ ।

ପ୍ରତିକୂଳ ଅର୍ଥ ଦେଖନ୍ତେ କରନ୍ତେ
କର ଅନୁକୂଳ କର୍ମ,
କର୍ମେ ତାହାଙ୍କର ଫଳିତ ହୋଇଛି
ମନ-କଳ୍ପିତ ଧର୍ମ ।

ବଦନର ଭାବ / ମାନବ-ହୃଦୟ-
ପୁସ୍ତକର ସୂଚୀପତ୍ର,
ବଚନେ ବର୍ଣ୍ଣିତ ହୋଇଥାଏ ସେହି
ପୁସ୍ତକର ସାର ତତ୍ତ୍ୱ।
ମୋତେହୋ ଜାଣିବାରେ • ନୃପଙ୍କ ହୃଦୟ
ପ୍ରସନ୍ନ ପ୍ରଶସ୍ତ ପୂତ,
କପଟତା ଦମ୍ଭ ଶଠତା ଚତୁରୀ
ନ ପାରେ ହୋଇ ସମ୍ଭୂତ।
ଜାନୁ ସେ ନ ରାଜା ରାଜଧର୍ମବଶେ
ରାଜକର୍ମେ ଥିବେ ରତ,
ମୁନି ଅଭିଶାପ ରୋଧି ହେବ ତାଙ୍କ
ପୁଣ୍ୟ-ସରଣ-ପଥ।
ତହୁଁ ଯାଇ'ଛନ୍ତି ଅମ୍ବିକାକୁ ଯାହା
ଆଉ ନ ଫେରିବେ ତାହିଁ,
ଉପାୟ କେବଳ ଅବଶ୍ୟ ଏବେ
ତାଙ୍କ ଦରଶନପାଇଁ।
ଭାବ କହୁଥାନ୍ତି, 'ଯହିଁ ଯେତେ ସୁଖ
ତହିଁ ଥାଏ ତେତେ ଦୁଃଖ,
ସୁଖ ନ ମିଳଇ ଦୁଃଖେ ଦଗ୍ଧ ନହ
ଚତୁ କହେ ଉପଦେଶ।' ”

ତା ପରେ ରାଜ୍ୟ-    ଜନ୍ୟାକ୍ଷସ୍ତୁ ଗଲେ
ଶକୁନ୍ତଳା ସନ୍ନିଧାନ,
ଦେଖିଲେ ସ୍ୱଦଗ୍ଧ    ବାମକରେ ଗଣ୍ଡ
ଥୋଇ କରୁଅଛି ଧ୍ୟାନ ।

ପ୍ରବଳତା ପ୍ରତ    ବସିଛି, ସମ୍ମୁଖେ
ଭୂତଳେ ହୋଇଛି ଲେଖା,
'ଦୁଷ୍ମନ୍ତ' ଅକ୍ଷର—    ଏବେ ମୁହୂର୍ମୁହୁ
ଚଳଛି ଚିତ୍ରରେଖା ।

ଦୁଷ୍ମନ୍ତ ଦୁଷ୍ମନ୍ତ    ପଢ଼ନ୍ତେ ସଖୀଏ
ଅନାଇ ଦେଲ ସ୍ୱଦଗ୍ଧ,
ଚାହିଁ ଚଉପଟ,    ଉଦ୍ଧ ହୋଇ'ଛନ୍ତି
ମାଡ ବେନି ସଙ୍ଗରଗ୍ଧ ।

ନ ଜାଣଇ କେସ    ଲେଖିଅଛି ତଳେ,
ସଖୀଏ ହସନ୍ତି ଗୁହିଁ,
କଲେ ପଢ଼ି ପରେ    ମେଘୋଇଲ ଶରେ
ପ୍ରେମାମୃତ-ଇଚ୍ଛା ପାଇ ।

ସଖୀ ପରିହାସ    ନ ଗଣି ସଭର
ଚିରେ ପୋଛିଦେଲ ଜଣ,
ସଖୀଏ ବୋଇଲ,    "ଇଷ୍ଟ ବନ୍ଧୁଭ
ଲେଖା କେଉଁ ଦୁଃଖହର ।"

## ଚତୁର୍ଥ ସର୍ଗ ।

ଅଣିଥିଲେ ପୁଣ ସନ୍ଧ୍ୟାଗ୍ନି ତମ୍ବ,
ଝିଟମ୍ବ ଶମଳ ମଳେ
ନେଇ ଦେବାଳୟେ ଗୌତମୀ ସହିତ
ଲାଗିଲେ ଦେବ ଅର୍ଚ୍ଚନେ ।

କେତେ ଦିନ ପରେ ଆଶ୍ରମେ ଆସିଲେ
କଣ୍ୱ ମୁନି ସୁଧୀବର,
ଶକୁନ୍ତଳା ତାଙ୍କ ପଦ ବନ୍ଦ ପାଶୁ
ଅନ୍ତର ହେଲା ସତ୍ୱର ।

ଆଉ ଯେତେ ଥିଲେ ତାପସ ତାପସୀ
ବନ୍ଦ ମୁନି ପାଦତଳେ
ମୁନି ପଚାରନ୍ତେ ବୋଇଲେ ସମସ୍ତେ
ଅଛନ୍ତି ରହି କୁଶଳେ ।
ପୁଣି ନିଜ ନିଜ କାର୍ଯ୍ୟରେ ଲାଗିଲେ
ମୁନିଙ୍କ ଆଦେଶ ପାଇ,
କେ କଲା ଯଜନ କେବା ଅଧ୍ୟୟନ
ପୂର୍ବ ରୀତି ଅନୁଯାୟୀ ।
ସଖୀ ସଙ୍ଗେ ଥାଏ ଶକୁନ୍ତଳା, କଲୁ
ମୁନିଙ୍କୁ କଲେ ଦର୍ଶନ,
ଚଞ୍ଚୁ ଛୁଇଁ କର ଦୂର ହୋଇଯାଏ
ଚଳତ ଭବ ବଦଳ ।

ପ୍ରଣୟ-ବାସନା ।

କୁମାରୀ-ସୁଲଭ ସରଳତା ତାର
ସୁକ୍ତିକଲୁ ପଦହତ
ବସ୍ତ୍ର ବନ୍ଧେ ଲଜ୍ଜା ପଲ୍ଲେ ଲୁଚିଥାଏ
ନେଲ୍ ମଙ୍ଗୁଳିକ ଭଳ ।

ଦିନେ ମହାଋଷି ତରୁମୂଳେ ବସି
କହୁଥାନ୍ତି ମନେ ମନେ,
ଧୂଳ ଧୂଳ ଗାନ ଦଗ୍ଧଅଛି ତପା
ଶକୁନ୍ତଳା ଅଚରଣେ ।

ପୂର୍ବ ପର ଅସି ମୋ' ଅଙ୍ଗେ ଦରମି
ଭକ୍ତ ନାହିଁ ତପା କଥା,
ସମସ୍ତେ ପଢ଼ିଲେ ଅପସର ଯାଏ
ଅଙ୍କଳଙ୍କ ଭଳ ମଥା ।

ତନୁ ଅବରଣେ ବେରେବେଳେ ତାର
ଦଣ୍ଡ ନାହିଁ ଅବହେଳା,
ମୁଣ୍ଡ ଜାନ୍ତ ତାର ଧଉ ଦଗ୍ଧଅଛି,
ଜାଲରେ ତା ଜପ ହେଲା ?

ତାଳ ବାଂଧିଅଛି ପାଦପ ଉପରେ
କଲ ଜପ ଜପ ରବ,
ଧାଇ ଦେଇ ମୁହଁ ଶୁଣି ଅଳପତ
ହେଲେ ସେ ରହସ୍ୟ ସବ ।

ଖେଦ-ରହିତ ହେଲେ ଶକୁନ୍ତଳା-
ଦୁଷ୍ମନ୍ତ-ପ୍ରଣୟ-କଥା,
ମନେ କଲେ ଋଷି— ପାଦପ ବରିଛି
ଯୋଗ୍ୟ ସହକାର ଲତା ।

ଆନନ୍ଦିତ ହେଲେ ଅନ୍ତରୁ ଜାଣି ସେ
ଲତିକା ଧରନ୍ତି ଜସି,
ନିଜ ଅଭିଳାଷ ସଫଳ ମଣିଲେ
ସୁତାଭାଗ୍ୟ ପରଶଂସି ।

ବିଚାରିଲେ ମନେ ପିତା ପୁରେ ସୁତା
ଥିବା ନୁହେଁ ଶ୍ରେୟସ୍କର,
ନିଜ ଲୋକ ସଙ୍ଗେ ପତି ସମୀପକୁ
ପଠାଇ ଦେବା ସତ୍ୱର ।

ଗୌତମୀଙ୍କି ଡାକି ବୋଇଲେ, "ସୁପ୍ରିୟ
ହୋଇଛି ମୋ ସଙ୍କଳପ,
ଶକୁନ୍ତଳା ଯୋଗ୍ୟ— ବର ପାଇଁ ଯାହା
କରି ଯାଉଥିଲି ତପ ।

ଋଷି ଅବଗତ ହେଲି ଏବେ ନିଜେ
କରି ହସ୍ତିନା ଭୂପତି
ଗାନ୍ଧର୍ବଭାବେ ଶକୁନ୍ତଳା କର
ଗ୍ରହଣ କରିଅଛନ୍ତି ।

ହସ୍ତିନାକୁ ଏବେ ଯାଉ ଶକୁନ୍ତଳା
ସେବିବ ସ୍ୱାମିଚରଣ,
ଉଚିତ ନୁହେ ତା ପକ୍ଷେ ଆଉ ଏଥୁ
କାନନେ ତପଶ୍ଚରଣ ।

କାଲି ପ୍ରଭାତରୁ ଉଠି ତୁମ୍ଭେ ସେନ
ସଙ୍ଗରେ ତାପସଦ୍ୱୟ,
ଶକୁନ୍ତଳାକୁ ମୋ' ଦେଇ ଆସ ଯାଇ
ହସ୍ତିନା ରାଜନଳୟ ।"

କାଶ୍ୟପ-ବଚନ ଗୌତମୀ-ଶ୍ରୁତିର
ହେଲା ଅନନ୍ଦର ଝର
ହୃଦୟ-କ୍ଷେତ୍ରକୁ ବିଶୋଭିତ କଲ
ଦାରୁଣେ ବହିଲା ଶର ।

ଆଜନ୍ମ କୋଳ- ଲାଳିତା ସ୍ନେହର
ମୂର୍ତ୍ତି ହେବ ରାଜରାଣୀ,
ଚରିତାର୍ଥ ହେବ ନାହିଁ ତା ଶ୍ରବଣ
ଶୁଣିଲେ ସେ ମଧୁ ବାଣୀ ?

ନୟନପ୍ରତିମା ଚିର ଦିନପାଇଁ
ନୟନୁ ହେବ ଅନ୍ତର,
ସେ କଥା ଭାବିଲେ ଦୁଃଖେ ବିଦାରିତ
ସହଜେ ହୁଏ ଅନ୍ତର ।

## ଚତୁର୍ଥ ସର୍ଗ

କ୍ଷଣକେ ସେ କଥା ବିସ୍ତାରିତ ହେଲା
କୁଟୀରେ କୁଟୀରେ ଯାଇ,
ତୃଣବନେ ଯଥା ବଢ଼ିଥାଏ ତାପ
ନିକଟ ବସ୍ତୁର ଲାଗି ।

ହସି ହସି କେହି ତାପସୀ କହିଲା,
"ପୂର୍ବରୁ ମୁଁ ଥିଲି ଜାଣି,
ଶକୁନ୍ତଳା ଯେବେ ଅଳଙ୍କୃତା ହେବ
ଦୁଷ୍ମନ୍ତଙ୍କ ରାଜଧାନୀ ।"

କେ ବୋଇଲା, "ଆମ୍ଭ ଶକୁନ୍ତଳା ଯାଇ
ଲଭିଲେ ରାଜ-ସମ୍ପତ୍ତି,
ଅଧିକୁଁ ଅଧିକ ହେବ ଏବେ ଆମ୍ଭ
ଆଶ୍ରମର ଭାଗ୍ୟବୃଦ୍ଧି ।"

କେ ବୋଇଲା, "ଏତେ କଥା ହୋଇଅଛି
କିନ୍ତୁ ମୁଁ ନ ଥିଲି ଜାଣି,
କିଏ ବା ଜାଣିବ ଚୁପଚାପି ଜଳେ
କେମନ୍ତି ପିଇଲେ ପାଣି ?"

କେ ବୋଇଲା, "ଓହୋ ଶକୁନ୍ତଳା ଦଶେ
କିଛି ନ ଜାଣିଲ ପର,
ଦେଖ ତ କୌଶଳେ ସୌଭାଗ୍ୟ-ମନ୍ଦିର
ନେଇଛି ପ୍ରସ୍ତୁତ କରି ।"

ଅପସ୍ତ କୋଇଲି,  “ଜାଗନ୍ତୁ ଗୌରବ
ଗୃହେଁ ଭାଗ୍ୟ ନାଏ ବଇ,
ଅଚିସ୍ତନନ୍ଦନା  ବୋଲି ପିନା ତାଲୁ
ଯେନାଲେ ନୃପକେଶରୀ ।

ଆଉ ଏକ କଥା ।  ଲୋକଙ୍କୁ ନାପୁଣ
କରାଏ ପ୍ରକୃତିଗୁଣ,
ଗାନ୍ଧି କରିବାକୁ  ଯାଇ ନ ଥାଏ କେ
ତନ କଣ୍ଟକର ମନ ।

ଯମ ଜାତି ଦେଖି  ପରସ୍ପର ମନ
ସ୍ତୁତିରେ ନୂଆଇ ଯମ,
ବାୟୁପପାଳିତ  ପିକ ଶାବ ପକେ
ମିଶିବାକୁ ହୁଏ ଯମ ।”

ଛିନ୍ନଥିବା ଶୁଣି  ସଦାଶେୟ କହିଲା
‘ଅନସୂୟା ମୁଗ ଗୃହେଁ,
“ସଜନ ! ସ୍ୱଶସ୍ତ-  ତରଣୀ ଲାଗିଲା
ସୁବର୍ଣ୍ଣ ଭୂମିରେ ଯାଇ ।”

ଅନସୂୟା ମୁଦ  ସମୁଦାୟ କେଳି
ପ୍ରକାଶିଲା ନାଜ ଭାଷ,
“ସତେ ସଖି ! ଚର—  କାର୍ଯ୍ୟବେଷ୍ଟାସୁ
ଚନ୍ଦ୍ରାମଣି ରସବାସ ।”

ଶକୁନ୍ତଳା କର୍ଣ୍ଣେ    ପଶନ୍ତେ ସେ କଥା
ଚିନ୍ତିଲେ ନିଜ ମନେ,
"ଦୁହିତାର ଦୋଷ    କ୍ଷମିବାକୁ ପିତା
ତୁଲ୍ୟ ନାହିଁ, ତ୍ରିଭୁବନେ ।

ପାଳୁଛନ୍ତି ମୋତେ    ହୋଇ ପିତୃ-ମାତୃ-
ସ୍ନେହ କର ସମନ୍ୱୟ,
କଥା ପଦେ ଯିବା    ତାଙ୍କୁ ନ ପଚାରି
ଜୀବନ କଲି ଶଙ୍କ୍ୟ ।

ଧନ୍ୟ ଧନ୍ୟ ପିତା !    ନଗଜାଣି ସ୍ୱଭାବ
କିଛି ନ ଧରୁଲେ ଦୋଷ ।
ଝୁଣ୍ଟି ଗୁହିଁ ସ୍ନେହ    ନ ଦୁଟି ତାଙ୍କର
ଅଧିକ ବଢ଼ିଛି ତୋଷ ।

ହୃଦୟ ତାଙ୍କର    ନ କଳି ହୃଦୟ
ହେଉଥିଲି ମୋ' ଅସ୍ଥିର,
ଦୁବାଳି-ଲଭକା    କେମନ୍ତେ ଜାଣିବି
ସାଗର କେତେ ଗମ୍ଭୀର ?

ଅସିବାକୁ କାନ୍ତ    କହି ଯାଇଥିଲେ
ନ ଆସିଲେ ଅଦ୍ୟାଏ,
ତାଙ୍କ ପ୍ରେମ ଅବା    କେମନ୍ତେ ଜାଣିବ
ତାହା ତ ସିନ୍ଧୁ ପଲ୍ଲବ ।

## ହଣନ୍ତ-ବଷସ ।

କାନ୍ତ-ପ୍ରେମ ଯେବେ      ସାଗର ମୋ' ପ୍ରେମ
ହେବ ତ ସରିତ ସମ ।
ସାଗର ଅଙ୍କୁ      ସରିତ ଯିବାକୁ
ନ ଥାଏ ତ ଅପସର ।

ଉଚ୍ଚ ଲୋକଠାରେ      ଉଚ୍ଚ ଆଶା କଲେ
ନ ହୁଏ କେବେ ନିଷ୍ଫଳ,
ଜଳସ୍ତମ୍ଭ ଯେବେ      ଉର୍ଦ୍ଧ୍ୱକୁ ଉଠଇ
ବରଷଏ ମେଘ ଜଳ ।

ହସିବେ କି ତାଙ୍କ      ରମଣୀମଣ୍ଡଳ
ମୋର ସେହ ଗଣ ଗୃହିଁ ?
ତରଙ୍ଗ-ଭ୍ରୂଭଙ୍ଗ      ନ ଗଣି ତଟିନୀ
ସାଗରେ ପଶଇ ଯାଇ ।"

ଏହିରୂପେ କେତେ      କଳ୍ପନା ଜଳ୍ପନା
ଲଟିଗଲା ତପୋବନେ,
ସମସ୍ତେ ଜାଣିଲେ,      ଶକୁନ୍ତଳା ସିଦ
ପଡ଼ିଛେ ପଞ୍ଚବଟନେ ।

ଜନକ ମାତର      ଥାଇ ତପୋବନେ
ରାଜରାଣୀ ହେବ ଯାଇ,
ମୁନି-କନ୍ୟାଗଣ      ଜାଣି ତାଙ୍କୁ ସ୍ନେହ-
ଭାଷରେ ଦେଲେ ଭସାଇ ।

## ଚତୁର୍ଥ ସର୍ଗ ।

ଜଳନ୍ତି ଅନ୍ତର                ଦେଖିବୁ ନ ଦେଲେ
କୁମାରୀମାନଙ୍କ ମନ,
ପ୍ରଗାଢ଼ ପ୍ରୀତିରେ                କରୁଥାନ୍ତି ତାଙ୍କୁ
ପୁନଃ ପୁନଃ ନିରୀକ୍ଷଣ ।

ଅନ୍ୟ ଚିନ୍ତାପାଇଁ                ଶକୁନ୍ତଳା ଆଉ
ନ ପାଇଲା ଅବସର,
ଯେ ଆସେ ପାଶକୁ                କରୁଥାଏ ତାଙ୍କୁ
ଦ୍ୱିଗୁଣ ସ୍ନେହ ଆଦର ।

ତପୋବନେ ମାୟା                ମମତାକୁ ଗୁନ୍ଥି
ଛିନ୍ନ ହେଲେ ଉର୍ଣ୍ଣାନ୍ତ,
ଭଙ୍ଗି ଭଙ୍ଗି ଯେସନ୍ତେ                ରାଗ-ରଜ୍ଜୁ-ମୂଳେ
ବେଗେ ହେଲେ ଅସ୍ତମିତ ।

ମାନବ ଧରମ-                ସୀମାକୁ ଲଙ୍ଘିଲେ
ଦେବେ ନ ପାରନ୍ତି ସହି,
ଜନ୍ମେ ଜନ୍ମେ ଯେଣୁ                ଧର୍ମ-ସୀମା-ମଧ୍ୟେ
ଚିର-କାଳ ଥାନ୍ତି ରହି ।

ସନ୍ଧ୍ୟା ଉପଗମେ                ମୁନିଜନ ହେଲେ
ବେଦଧ୍ୱନେ ମୁଖରିତ,
ତପଜନଙ୍କର                ସନ୍ଧ୍ୟାହ୍ନି ଭଜନ
ଗଗନରେ ଗଲା ପୂରିତ ।

ସନ୍ଧ୍ୟା ବେଳୁ ମାଡ଼ି          କୁମାରୀ ଶୋଇଲେ
ପ୍ରିୟ ସଖୀବୃନ୍ଦ ସଙ୍ଗେ,
ନାମ ମାତ୍ର ତନୁ          ଶଯ୍ୟାରେ ରହିଲା,
ଲାଗିଲେ ଆଳାପରଙ୍ଗେ ।

ଛନି ସଖୀଙ୍କର          ମନ, ମନକଥା
ସବୁ କହିଦେବେ ଶେଷ,
ଏକର କଥନ          ନ ସରୁ ଅନ୍ୟର
କଥା କରେ ପରବେଶ ।

ନଦ୍ୟା ଅଙ୍ଗ ମୁନି-          ସୁତାଙ୍କ କୁଟୀର-
ସୀମା ମାଡ଼ି ପାରୁ ନାହିଁ,
ବାରମ୍ବାର ଉଠି          ଲେଉଟି ଯାଉଛି
କୁଆର ମୁଖକୁ ଚାହିଁ ।

ଅବଶେଷେ ନିଦ୍ରା          ସ୍ୱପନ ସହିତ
କୁଟୀରେ ପ୍ରବେଶି ବଳେ
କୁମାରୀଙ୍କ କର୍ଣ୍ଣ-          ପଟେ ଆପୁଡ଼ଲେ
ମୃଦୁମନ୍ଦେ କହିଗଲେ ।

ବାରମ୍ବାର ଚେଇଁ          କୁମାରୀଏ ପୁଣି
କରୁଥାନ୍ତି କଥାରମ୍ଭ,
ସ୍ୱପନର ସ୍ରୋତ-          ଅଲଙ୍ଘନେ ଚେତା
ମାନିଗଲା ପରାଭବ ।

ସ୍ୱପ୍ନ ବୋଲେ ବସି  ଶକୁନ୍ତଳା ଦେଖ
ହସ୍ତିନାରେ ଉପଗତ,
ଦେଖିଲ ନଗରେ  ପ୍ରବନ୍ଧ କୁଟୀର-
ଶ୍ରେଣୀ ଯେତେ ପରବତ ।

ଧାଡ଼ୀ ହଳହଳ  ଫଳପୁଷ୍ପେ ଖଞ୍ଜ-
ପୁରେ ଝୁଲେ ସ୍ୱର୍ଣ୍ଣ ମାଳା;
ମୁନିପତ୍ନୀଙ୍କର  ପରି ଲାଗିଅଛି
ପୁର-ନାରୀଙ୍କର ଲୀଳା ।

ଅଦ୍ଭୁତ ଗଜ-  ଦନ୍ତ-ପାଦ ଖଟ
ତାହ୍ନ ତା ସୁବର୍ଣ୍ଣ-ଦଣ୍ଡ,
ଅନ୍ଧାରେ ଯେସନ  [illegible] ବର୍ଦ୍ଧନର
[illegible]-କାଷ୍ଠ-ଖଣ୍ଡ ।

ଉଚ୍ଚ ଦଉଡ଼  ଗୁମ୍ଫା ହୋଇଅଛି
ବଂଶେ ତାର ଉପାଗଦା;
ସୁବର୍ଣ୍ଣ ଭୂଷାରେ  ରତ୍ନ ବଇଠାରେ
ସଜିତା ଉତ୍ତରୁ ସଦା ।

ବଳୁଳ ପଲ୍ଲବ  ମୁଗ୍ଧ-ହେମ-ପଙ୍କ-
ଚିତ୍ରିତ କେତେ ବଣୀ,
ଯୋଷଙ୍କ ଦର୍ଶନେ  ମୃଗୀ ପରି ଢଳେ
ତା ପୁତ ଲକ୍ଷ୍ମୀ ହାଣି !

ବାସ୍ତବ ନ ଜାଣି ଗଉତମୀ ଆସି
"ଶକୁନ୍ତଳା ଶକୁନ୍ତଳା"
ଡାକ ଉଠାଇଲେ ସେ ଡାକ ତାହାର
ସ୍ୱପନରେ ମିଶିଗଲା ।

ସ୍ୱପନର ଅଙ୍କ— ଗୃହଣୀର ତାହା
ଏମନ୍ତ ପ୍ରଭାତ ହେଲା,
ରାଜପୁର ମଧ୍ୟୁଁ କେହୁ "ଶକୁନ୍ତଳା
ଶକୁନ୍ତଳା" ଡାକ ଦେଲା ।
ତେବେଁ ପ୍ରିୟମ୍ବଦା ଉଠି ହଲାଇଲା
ସ୍ୱପନ-ମଗ୍ନା-ଦେହ,
ମଣିଲା ସେ ରାଜ- ପୁର-ନାରୀ ଏକ
ଧର କରୁଅଛି ସ୍ନେହ ।

ଗାଢ଼ ଆଲୋଡ଼ନେ ଭାଙ୍ଗିଲା ସ୍ୱପନ
ଚମକି ଚାହିଁଲା ଭୀରୁ,
ଅଟବୀ-କୁଟୀରେ ରହିଅଛି ଦୂରେ
ସମ୍ପଦର ଅଟବୀରୁ ।

ପୁନଶ୍ଚ ଗୌତମୀ ଡାକିଲେ, "ସତ୍ୱର
ଶକୁନ୍ତଳା ବେଗ ଚଳ,
ଆସ ପ୍ରିୟମ୍ବଦା, ଆସ ଅନସୂୟା,
ବଲ୍କଳବାସ ଅଛି ଅଳ୍ପ ।

ଡହୁଲପକ୍ଷୀଏ      କେତେବେଳୁଁ ବନେ
    ଲୁବଲେଣି ବାରମ୍ବାର,
କ୍ଷଣକ ପରରେ      ଦୂର ହୋଇ ଯିବ
    ନିଶା-ଶେଷ-ଅନ୍ଧକାର ।

ହେଲେଣି ଅଦୃଶ୍ୟ      ଯାନ ତାରା ସବୁ
    ବଡ଼ ବଡ଼ ତାରା ମ୍ଳାନ,
ଅରୁଣ-ଉଦୟ—      ପଥ ପରିଷ୍କାର
    ହେଉଛନ୍ତି ଦିଗ୍‌ମାନ ।”

ଚମକିଲ ପର      ଉଠି କାକଗଣ
    ସେହିକାଳେ କଲେ ରଡ଼ି,
ସବେ ତ ତାଙ୍କର      ଧ୍ୱନି କେ ନେଉଛି
    ଥିବାରୁ ସେ ଶୋଇପଡ଼ି ।

ଗୌତମୀ ସହିତ      ପ୍ରିୟମ୍ବଦା ଆଦି
    ତହୁଁ ଯାଇ କଲେ ସ୍ନାନ,
କେତେ ମୁନିସୁତ      ଅଗ୍ନି ସ୍ଥାନ କରି
    ଗାଇଦେଲେ ବେଦଗାନ ।

ଶକୁନ୍ତଳା ସ୍ନାନ      କରିଲା ପଶି
    ଅଙ୍ଗେ ଲେପି ତୀର୍ଥ ମାଟି,
ବଳେଣି କୁଙ୍କୁମ      ସଙ୍ଗେ ଗୋରୋଚନା
    ନାଗେଶ୍ୱର ଚୂର୍ଣ୍ଣ ବାଟି ।

ସ୍ନାନ ଅବଶେଷେ ପିନ୍ଧି ଶୁଭ୍ରବେଶୀ
ମନୋରମ ଦୁଗ୍ଧବାସ
ଗୁରୁ-ଜନ-ପଦେ ପ୍ରଣମି ସେଜନଙ୍କ,
ମଙ୍ଗଳ-ଆଶିଷ-ଭାଷ ।

ଗୌତମୀ ବୋଇଲେ, "ମହାରାଣୀ-ପଦେ
ହୁଅ ବତ୍ସେ ! ଗୌରବଣୀ",
ଅନ୍ୟ କେ ବୋଇଲା, "ସୀତା ପରି ହୁଅ
ମହାବୀର—ପ୍ରସବିନୀ ।"

ଅନ୍ୟ କେହୁ ସେହୁ ଆଶୀର୍ବାଦ ଶୁଣି
"ଚିନ୍ତିଲା ମନେ ମନେ,
ସୀତା ନିର୍ବାସିତା ହୋଇ ବୀରପୁତ୍ର
ପ୍ରସବିଥିଲେ ଯେ ବନେ ?

ଏଣେ କଳାକର ଚନ୍ଦ୍ରିକା ସହିତ
ବଦନରେ ଭରି ମ୍ଳାନ
ବାରୁଣୀ ମନ୍ଦିର ସମୀପସ୍ଥ ହେଲେ
ଲେଉଟେଣେ ଦେଇ ଗ୍ଳାନ ।

ଅନ୍ୟ ଦିଗେ ରବି କରି ସମୁଜ୍ଜ୍ୱଳ
ଅରୁଣକୁ ଅଗ୍ରସର
ଜଗତ୍-ପଟରେ ପଦକ୍ଷେପ କରୁ-
ଛନ୍ତି ହୋଇ ଭରଭର ।

## ଚତୁର୍ଥ ସର୍ଗ ।

ଜ୍ୟୋତିଷ୍କ ଯୁଗଳ          ଦେଖାଇଲେ ଭବେ
    ନିଜ ଦଶାବିପର୍ଯ୍ୟୟ,
ଦେଖୁ ଦେଖୁ ଏକ          ଅଧୋଗତ, ଅନ୍ୟ
    ଅପରର ଅଭ୍ୟୁଦୟ ।

ଧରାଧର-ଗୁରୁ          ମେରୁ-ଶିରେ ପାଦ
    ଦେବାର ଗରବ ଫଳେ
ଶ୍ରୀହୀନ ଶଶାଙ୍କ          ନିପତିତ ହେଲେ
    ଅସ୍ତାଚଳ-ପାଦ-ତଳେ ।

କୁମୁଦିନୀ-ଶୋଭା          ଦୃଷ୍ଟି-ପଥୁଁ ଯାଇ
    ମୁକୁଳରେ କଲା ବାସ;
କାହା ଜୀବନରେ          ଉଲ୍ଲାସ ରହୁଛି
    ପ୍ରଣୟୀ ଗଲେ ପ୍ରବାସ ?

କୁମୁଦିନୀ ପୁର          ତେଜି ମଧୁକର
    କମଳିନୀ ଦ୍ୱାରେ ଆସି
ପ୍ରଭାତ-ଉଲ୍ଲାସେ          ହୋଇ ଗାନମତ୍ତେ
    ଦେଲା ତାର ଶଯ୍ୟା ଜାଣି ।

ପଦ୍ମ କୁବଳୟ-          ଦଳେ ହିମକଣା
    ପ୍ରାତଃ ସମୀରଣେ ହଲି
ଅରୁଣ କିରଣ          ମୁଦେ ଦେଉଅଛି
    ମାଣିକ୍ୟର ଦର୍ପ ଦଳି ।

ପ୍ରଣୟ-ବଲ୍ଲରୀ ।

ଗୀତନୃତ୍ୟ ତ୍ୟାଗି ଉଟଜ ଉପରୁ
ଓହ୍ଲାଇ ମୟୂରମାନେ
ଚିତ୍ର-ରଚନ- କାନ୍ତି ମାନ କଲେ
ଅରୁଣ-କିରଣ-ଘାଣେ ।

ଦୂର-ଦୂର୍ବା-ଚର୍ବଣ ପ୍ରାନ୍ତେ ଉଭା ହୋଇ
ହରଣ ହରଣୀଗଣ
ଗ୍ରୀବା ସଙ୍କୋଚି ଆଗେ ପଛେ କଲେ
ଅପଘନ ପ୍ରସାରଣ ।

ଏକାଳେ ହାରୀତ ନାମେ ଋଷିପୁତ୍ର
କାଶ୍ୟପ ଆଦେଶ ପାଇ
ଅଳଙ୍କାରପୂର୍ଣ୍ଣ ଥାଳ ଏକ ଆଣି
ଦେଲା ଶକୁନ୍ତଳାପାଇଁ ।

ତୁଣ୍ଡ ହୋଇଥିଲେ ତାପସୀ-ମଣ୍ଡଳୀ
ଚାହିଁ ସବୁ ଅଳଙ୍କାର
ବୋଇଲେ, "ଏ ଭୂଷା ସବୁ କାହୁଁ ଥିଲା,
ଆହା କେଡ଼େ ଚମତ୍କାର !"

କେ ବୋଇଲା, "ଏହୁ ଶଚୀଙ୍କ ଭୂଷଣ
କଦାପି ନୁହେ ପାଟିବ,
ସ୍ୱର୍ଗୀୟ ଭୂଷଣ ସ୍ୱର୍ଗ-ଅପସରା
ତୁଙ୍କେ ଆଣି ଦେଇଥିବ ।

## ଚତୁର୍ଥ ସର୍ଗ ।

ଭୂଲୋକର ସୁଖ          ଦୁଃଖ ଭଲ ମନ
ସ୍ୱର୍ଗକୁ ଦଶଇ ପରି,
ଭୂତଳର ସ୍ନେହ-          ବନ୍ଧେ ପଶିବାକୁ
ହୁଇ ନୁହେ ତାଙ୍କୁ ଧରି ।

ପ୍ରିୟ କଥା ପ୍ରିୟ          ଜାଣଇ, ପ୍ରିୟ ଏ
ଭୂଷଣ ଅନୁରାଗିଣୀ,
ସ୍ୱର୍ଗେ ଥାଇ ତାର          ସ୍ନେହ କ ଛାଡନ୍ତି
ଯେ ଯାହା ଗର୍ଭଧାରଣୀ ।"

କେ ବୋଇଲା, "ମୁନି          ଜାଣି ଜାଣି କହ-
ଥିଲେ ଏ ସବୁ ସମ୍ମତ,
ପ୍ରିୟସଖା ତାଙ୍କ          ପ୍ରିୟ ଭୂଷଣରୁ
ନ ଦେବ ବୋଲି ବସ୍ତୁତ ।"

ଦାସ୍ୱତ ବୋଇଲେ,          "ମୁନି ମହଲରେ
ନୁହେ ଏହା ଚମତ୍କାର;—
ତାଙ୍କ ଉଦ୍ୟାନର          ଏକ ଏକ ତରୁ
ଏକ ଏକ ଧନାଗାର ।

ପୁଣି ଏକ ଏକ          ରାଜା ମୁନୀନ୍ଦ୍ରଙ୍କ
ଏକ ଏକ ମହାତରୁ,
ଏକଇ ଭୂଷଣ          ମିଳିବାର କେଉଁ
ଛଇ ତାଙ୍କ ନିକଟରୁ ?

ଭୂଷଣ-ବଣ୍ଟନ ।

ସିଦ୍ଧତାପଙ୍କର        ଶକ୍ତି ନ ଥାଏ
'ଧର୍ମ ରତ୍ନ ଅଳଙ୍କାରେ,
ପୂଜ୍ୟ ହେବା ଅଶେ        ଧନ ରତ୍ନ ଆଦି
ତୁଚ୍ଛ ହୋଇଥାନ୍ତି ଦ୍ୱାରେ ।
ମୁନୀନ୍ଦ୍ର ଆଦେଶେ        ଉଦ୍ୟାନେ ବୁଲି ମୁଁ
ତର ବଢ଼ାଇବା ମାତ୍ରେ
କେଉଁଠାରୁ କେଜାଣି        ଅଳଙ୍କାର ଆସି
ପୂରିଗଲେ ଏହୁ ପାତ୍ରେ ।"
ଭୂଷା ଖଣ୍ଡିବାକୁ        ତାପସୀମାନଙ୍କ
ବୁଦ୍ଧି ହୋଇଗଲା ବଣା,
କେଉଁ ଭୂଷା କେଉଁ        ଅଙ୍ଗେ ଯୋଜନୀୟ
ତାଙ୍କ ତ ନ ଥିଲା ଜଣା ।

କଣ୍ୱ ହେଲା ତାହା        ପରିବ୍ରାଜକାଏ
"ଏଲ ତାପସୀଙ୍କ ସଙ୍ଗେ,
ମୁହେ ପ୍ରିୟମ୍ବଦା        ଭୂଷା ନେଇ ମଣ୍ଡି-
ହେଲା ଶକୁନ୍ତଳା-ଅଙ୍ଗେ ।
ନିସର୍ଗ-ସୁନ୍ଦରୀ—        ଶକୁନ୍ତଳା-ଦେହେ
ସ୍ଥାନ ଲଭି ଅଳଙ୍କାରେ
ପ୍ରଫୁଲ୍ଲିତ ହେଲେ        ରବି-ରଶ୍ମି-ଚ୍ଛୋଭେ
ପଙ୍କଜା ଚରଜାରେ ।

## ଚତୁର୍ଥ ସର୍ଗ

ଭୂଷଣେମଣ୍ଡିତା ଶକୁନ୍ତଳା ଅଙ୍ଗେ
ପଟ୍ଟ ନବ-ରକ୍ତ-ବର୍ଣ୍ଣ,
ଧନ୍ୟ ହେଲି ବୋଲି ଉପରେ ନାଚିଲା
ଉଚ୍ଛ୍ୱାସେ କଳେବର ।

ଭୂଷା ଶେଷେ ଯୋଷା ସ୍ପର୍ଶି କରୁଁ ନେଇ
ସୁରଙ୍ଗ-ଦୁକୂଳ-ଶାଢ଼ୀ
ପରିଧାନ କଲା କ୍ଷୀଣ-କଟି ଗୌର-
ଦେହେ କରି ପରିପାଟୀ ।

ଯେ ଦିନ ଜାଣିଲା ଯହିଁ ପାଇଁ ତାର
ହୋଇଥିଲା କର୍ଣ୍ଣବେଧ,
ସେ ଦିନ ଜୀବନେ ଅନୁଭବ କଲା
ବଲ୍କଳ ଦୁକୂଳ ଭେଦ ।

ଏ କାଳେ ମୁନୀନ୍ଦ୍ର ଆସି ସ୍ନେହଦୃଷ୍ଟି
ଦେଇ ଶକୁନ୍ତଳା ପ୍ରତି
ଚିନ୍ତିଲେ ମନେ ଶକୁନ୍ତଳା ହୀନ
ହେବ ମୋ' ବନପ୍ରାନ୍ତ ।

ସେ ଦଣ୍ଡରେ ଦ୍ରୁତ ଶୋକୋଦ୍ଭୂତ ହୋଇ-
ଗଲା ମୁନିବରଙ୍କର,
ମୃଣାଳ-ଲାଳସୀ ଗଜ ପ୍ରବେଶିଲେ
ଯେସନେ କମଳାକର ।

ଶୁଦ୍ଧ ଆନ୍ଦୋଳନେ  ନୟନଯୁଗଳେ
ଜଳ ହେଲା ଢଳଢଳ,
ଜଡ଼ିମିତ ସ୍ୱରେ  ସ୍ୱତଃ ଝରିଥାଏ
ଜଳଜ-ଦଳରୁ ଜଳ ।
ସେହି କାଳେ ଯଦି  କଥା କହୁଥାନ୍ତେ
ଅଶ୍ରୁ ଯାଇଥାନ୍ତା ବହି,
* ପାତ୍ରରୁ ଦେଖେ  ପଥ ଫିଟିଗଲେ
ପାଥ କି ପାରଇ ରହି ?
ସମସ୍ତ ପାଇଲେ  ଜୀବନେ ପ୍ରବୃତ୍ତି
ଫୁଟି ପଡୁଥାଏ ଅଚି,
ପ୍ରବୃତ୍ତିବର୍ଜିତ  କେ ଅଛୁ ଜଗତେ
କି ଗୃହୀ କି ବନବାସୀ ?
ମୁନି ଅଗମନ  ବୁଝି ଶକୁନ୍ତଳା
ସଲଜ୍ଜେ ଚରଣ ତଳେ
ଗୌତମୀ ଉପଦେଶେ  ପ୍ରଣିପାତ କଲା
ନୟନ ପୂରିଲ ଜଳେ ।
ଆନନ୍ଦ-ପୁଲକେ  ବାଷ୍ପ-ଗଦଗଦ—
କଣ୍ଠେ ଆଶିଷିଲେ ମୁନି,
"ସମସ୍ତ ଭୁବନେ  ପତି-ରତ୍ନାକରେ
ହୁଅ ମା ତୁ ସୁରଧୁନୀ ।

* ପାଥ—ଜଳ ।

ସୁଖ ଲଭ ତର          ଚକ୍ରବର୍ତ୍ତୀ-ଚିହ୍ନ-
ସମଣ୍ଡିତ-କଳେବର ।"
ସହର୍ଷେ ଗୌତମୀ          ବୋଇଲେ, "ଏହିଟି
ଆଶୀର୍ବାଦ ଛଳେ ବର ।"

ବସି ମୂଳ ପାଶେ          ସୁତାକୁ ବସାଇ
କ୍ଷଣେ ସ୍ଥିର କରି ମନ
ସସ୍ନେହେ ବୋଇଲେ,          "ମା'ଆ ଗୋ, ତୁ ଆଜ
ଗମିବୁ ପତିସଦନ ।

ସ୍ୱଳ୍ପ ତପୋବନେ          ଶାନ୍ତିର ଭବନେ
ସଖୀ ସଙ୍ଗେ, ଖେଳ ରଙ୍ଗେ,
ପଶିବୁ ଏଥର          ସମ୍ପତ୍ତି-ସଙ୍କୁଳ-
ସଂସାର-ସିନ୍ଧୁ-ତରଙ୍ଗେ ।

ନାବ ବିନା କେହୁ          ସାଗରେ ପଶିଲେ
ଲଭଇ ଘୋର ବିପଦ,
ସଂସାର-ସାଗର          ପାରି ମହାପୋତ
ଏକ ମାତ୍ର ସ୍ୱାମି-ପଦ ।

ନାରୀମାନଙ୍କର          ସ୍ୱାମୀଟି ଈଶ୍ୱର
ସ୍ୱାମିଙ୍କ ଚରଣ ସ୍ୱର୍ଗ,
ଭକ୍ତି ଶ୍ରଦ୍ଧା ପତି—          ତୁହାର ସଙ୍ଗିନୀ
ସ୍ୱାମି-ପ୍ରୀତି ଅପବର୍ଗ ।

ସ୍ୱାମୀ ଗୁରୁ ସ୍ୱାମୀ     ପରମ ବାନ୍ଧବ
ସ୍ୱାମି-ସେବା ନାରୀଧର୍ମ,
ସ୍ୱାମି-ପଦେ ଭକ୍ତି     ଅର୍ଚ୍ଚନାରେ ମତି,
ଅର୍ପି ତୁ କରିବୁ କର୍ମ ।

ସ୍ୱାମୀ ଯା କହିବେ     ଦୁଷ୍କର ହେଲେ ହେଁ
ପାଳନେ ହେବୁ ତତ୍ପର,
ଥରେ ଯା ବାରିବେ     ଆଉ ତହିଁ କେବେ
ହେବୁ ନାହିଁ ଅଗ୍ରସର ।

ଦୁଃଖ ଥିଲେ ମନେ     ଦୂର କରିବୁ ତା
ସ୍ୱାମି-ଦରଶନ ମାତ୍ର,
ପରିହାସ କଲେ     ତାଙ୍କୁ ନ ମଣିବୁ
ତୁଚ୍ଛ-ପରିହାସ ପାତ୍ର ।

ସ୍ୱାମୀଙ୍କ ଭୋଜନ     ପରେ ତୁ ଭୁଞ୍ଜିବୁ,
ଶୋଇବୁ ଶୟନ ପରେ,
ସ୍ୱାମୀଙ୍କର ଶଯ୍ୟା     ତେଜିବା ପୂର୍ବରୁ
ଉଠୁ ଥିବୁ ପ୍ରତ୍ୟୂଷରେ ।

ଅବସର ହେବୁ     ନାହିଁ ତୋ ନେତ୍ରକୁ
ପଦ-ପଦ୍ମ-ଦରଶନେ,
ସୋଦର ହେଲେହେଁ     ନିର୍ଜନେ ନିକଟେ
ରହୁ ହେବୁ ନାହିଁ କ୍ଷଣେ ।

## ଚତୁର୍ଥ ସର୍ଗ

ସ୍ୱାମୀ ଯେବେ ରୋଷ କରିବେ ଅଥବା
କହିବେ ଯଦି ଭର୍ତ୍ସନା,
ସେ ଦୋଷ ନ ଦେଖି ନତ ଶିରେ ସହି
କରିବୁ ତାଙ୍କ ଅର୍ଚ୍ଚନା ।

ନିଜ କରେ ରାନ୍ଧି ଥାଳେ ଦେଉଥିବୁ
ପତିଙ୍କୁ ଅନ୍ନ ବ୍ୟଞ୍ଜନ,
ଭୋଜନ ସମୟେ ପାଶେ ବସି ହୋଇ
ଚାଳିବୁ ଧରି ବ୍ୟଜନ ।

ସ୍ୱାମି-ସେବା କାର୍ଯ୍ୟେ ଦାସୀ-ପ୍ରତିନିଧି
କଦାପି କରିବୁ ନାହିଁ,
ସଦା ଚେତନରେ ପଦ-ଯୁଗଳକୁ
ସବୁଁ ଦେବୁ ଘଉଡ଼ାଇ ।

ସ୍ୱାମୀ ତୋ ଅବନୀ ଈଶ୍ୱର ବନ୍ଦିଥିବୁ
ତୋ ଶିରେ ତାଙ୍କ ଚରଣ,
କେତେ ଧୈର୍ଯ୍ୟ ତୋତେ ପାଇଁ ପ୍ରୟୋଜନ
ରଖିବୁ ସଦା ସ୍ମରଣ ।

ବାହ୍ୟ ଭୂଷଣର ଗର୍ବ ନ କରିବୁ
ଅବା ତହିଁ ପାଇଁ ଅଳି,
ଯାହା ଦେବେ ତୋତେ ସନ୍ତୋଷେ ସେଥିରୁ
ଜାଣିବୁ ତାହା ତୋ ଭଲ ।

ଶାଶୁଙ୍କ ଚରଣ          ସେବୁଥିବୁ ନିତ
ଗୃହର ଦେବତା ମଣି,
ଶାଶୁଙ୍କି ସ୍ୱାମିଙ୍କ          ପୂଜା-ସିଂହାସନ
ସର୍ବ ସମ୍ପଦରୁ ଗଣି ।

ନଣନ୍ଦ ଅଳରେ ,          କେବେ ନ ଟଳିବୁ
ଅଧିକେ କରିବୁ ସ୍ନେହ,
ବମନା ହେଲେ ସେ          କୋଳକୁ ଆଣିବୁ
ଆଉଁସି ତା ମୁଖ ଦେହ ।

ଅଜ୍ଞ ଯେତେ ପୁର—          ନାରୀ ଥିବେ ତାଙ୍କୁ
କରିବୁ ବଡ଼ିମା ଜ୍ଞାନ,
ସେ କଥା କଦାପି          ନ କହିବୁ ଯହିଁ
ହେବ ତାଙ୍କ ଅପମାନ ।

ଗୁରୁଜନ କେହୁ          ପାଶକୁ ଆସିଲେ
ଉଠିବୁ ତେଜି ଆସନ,
ଉଚ୍ଚାସନ ଦେଇ          ବହୁ ସମ୍ମାନେ
କହିବୁ ମୃଦୁ ଭାଷଣ ।

ଉଚ୍ଚ ହାସ କେବେ          ନ କରିବୁ ପୁଣି
ନ କରିବୁ ଉପହାସ,
ପରିହାସ ଛଳେ          କରିବୁ ନାହିଁଟି
ସଖୀଜନ ମନ ତ୍ରାସ ।

## ଚତୁର୍ଥ ସର୍ଗ

ଜନକ ପରସ୍ତୁତ ଥାଉ ଜଳ ସ୍ପୃହ
ରଖିଥିବୁ ପରସ୍ପର,
ପଲ୍ଲବଜନଙ୍କର ଭୃଙ୍ଗ ଶୁଣୁଥିବୁ
କରୁଥିବୁ ପ୍ରଗଳ୍ଭାର ।

ଅନାହୂତ ହୋଇ ଆସି ହୃଦ ଚୋର
ଅଯଥା ପ୍ରଶଂସା କଲେ,
ଜାଣିଥିବୁ ତାର ଆଗମନ ହେତୁତ
ଠକିବାକୁ କଉଶଳେ ।

ସ୍ୱାମୀ ଦୋଷ, ରୋଷ ଜଣାଇବାକୁ ତୋ
ବଣ୍ଟକ ଆସି ଯେ ନ୍ୟାସ,
ତା କଥା ଶପଥ ବସ୍ତୁ ମଣିଥିବୁ,
ସେ ଏକା ତୋର ଉପାୟ ।

ଏତେ ଦିନଯାଏ ମଣିଥିଲୁ ପ୍ରିୟ
ସମ୍ପତ୍ତି ତୋ ତପୋବନ,
ଏ ଥର ମଣିବୁ ଅଖିଳ-ଅବନୀ
ହେଲା ତୋର ପ୍ରିୟଧନ ।

ତପୋବନ-ସଙ୍ଗୀ- ରୂପ-ଗତ-ସ୍ନେହ
ସଙ୍ଗୀରେ କରିବୁ ନ୍ୟସ୍ତ,
ମୃଗ ମୃଗୀ ଗତ ମମତା କରିବୁ
ମାନବ-ସମାଜଗତ ।

ସ୍ୱାମୀ ତୋର ଦୃଷ୍ଟି          ସ୍ୱରୂପ ଚଣ୍ଡିକ
ଜଳଛନ୍ତି କଣ୍ୱାଶ୍ରମ,
ସେ ଆଶ୍ରମ-ନାଥ          ଉଷଣେ ଜଗର
ଜୀବନ କଉରୁ ଶମ ।

ଉଠ ମା ଏଥର          ଚାଲ ଶୁଭ କ୍ଷଣେ
ସ୍ୱାମି-ପଦ-କଞ୍ଜ ଧାଇଁ,
ଗୌତମୀ ସହିତ          ଶିଷ୍ୟ ଦୁଇ ତୋତେ
ତହିଁ ଦେବେ ପହୁଞ୍ଚାଇ ।

ଅଗେ ଶାରଙ୍ଗଣ,          ଚାଲ ଦେଖାଅ ତୋ
ଭଗିନୀର ଗନ୍ତପଥ,
ଗୌତମି, ତୁମ୍ଭେ ତା          ସଙ୍ଗେ ଚଳ, ଦେଖ
ଶାର୍ଙ୍ଗରବ ଅନୁଗତ ।"

ଚାଲିଲେ ଗୌତମୀ          ହସ୍ତିନାଭିମୁଖେ
ଶକୁନ୍ତଳା କର ଧରି,
ଚାଲିଲେ ମୁନୀନ୍ଦ୍ର          ତାପସ-ମଣ୍ଡଳ
ସଙ୍ଗ ସଙ୍ଗ ସହତଲା ।

ଶକୁନ୍ତଳା ପଥେ          ଯାଉଁ ଯାଉଁ ତାର
ତରୁ ଲତା ଚାହିଁ ଚାହିଁ
ହୃଦୟ-ପଟରେ          ଚକି ନେଉଥାଏ
ସେନେହ-ରଙ୍ଗେ ଲଗାଇ ।

ଥରେ ଥରେ ସବୁ ବୃକ୍ଷ ଲତା ଅଙ୍ଗ
କମ୍ପ ଦେଉଥାଏ ଶୃଙ୍ଗ,
ଚବାଣ ବ୍ୟାଜରେ ତରୁ ଲତାଙ୍କର
ହେଉଥାଏ ଲୋମହର୍ଷ ।
କେତେକ ଶିଶିର- ଛଳେ କେତେ ଅବା
କୁସୁମ-ବର୍ଷଣ-ଛଳେ
ଶକୁନ୍ତଳା ନାମ ସ୍ମରଣ ମାତ୍ରକେ
ଲୋତକ ମୋଚନ କଲେ ।
ଯେଉଁ ସବୁ ତରୁ ଲତାଙ୍କୁ ସୁଶୀଳା
ଜଳ ଦେଉଥାଏ ନିତ୍ୟେ —
ବିରହ ବେଦନା ଅନୁଭବ ଯେସନେ
କରୁଥାନ୍ତି ମର୍ମେ ମର୍ମେ ।
ବନେ ମୁହୁର୍ମୁହୁ ଶୁଭୁଗଲା ନୀଳ
କପୋତ କରୁଣ ଗାନ,
ସତେ ଯେସନେ କାନ୍ଦ ପକାଇଲେ ଦୁଃଖ-
ଭରେ ତରୁ ଲତାମାନ ।
କୁହୁ କୁହୁ ସ୍ୱନେ ମଧୁରେ ଗାଇଲା
କୋକିଳ ବନବାନ୍ଧବ,
ଶୁଭ ଗମନରେ ବନଦେବୀ ଯେସନେ
କଲେ ହୁଳହୁଳି ରବ ।

## ପ୍ରଣୟ-ଭଙ୍ଗ ।

ହରଣ ହରଣୀ          ମୟୂର ମୟୂରୀ
ଅହାର ବିହାର ଛାଡ଼ି
ଦୁଃଖିତ ନୟନେ          ଅନାଇ ରହୁଛନ୍ତି
ପଥ-ପାର୍ଶ୍ୱେ ଧାଡ଼ି ଧାଡ଼ି ।

ମୃଗଶିଶୁ ଏକ          ଅସି ଶକୁନ୍ତଳା
ଚରଣ ଦୁକୂଳାଞ୍ଚଳେ
ଲୁଚି ଲୁଚି ସଙ୍ଗେ          ସଙ୍ଗେ ଚାଲୁଥାଏ
ନ ରହୁ ହରଣୀଦଳେ ।

କେତେ ବୁଝେ ତାହା          ଜାଣି ଶକୁନ୍ତଳା
ଆଉଁସି ତା ଦେହ ମୁଖ
ସଜଳ ନୟନେ          ପିତାଙ୍କୁ କହିଲେ
ପ୍ରକାଶି ହୃଦୟ ଦୁଃଖ ।

"ଜାଣ ତାତ, ମୋତେ          ଯେମନ୍ତ ସ୍ନେହରେ
ପାଳିଅଛ ତପୋବନେ,
ଅକାଳ ଜନନୀ-          ହୀନ ଏ ଶିଶୁକୁ
ପାଳିଅଛି ମୁଁ ତେସନେ ।

ସ୍ନେହ-ରଜ୍ଜୁ ତାର          ଛିଣ୍ଡାଇ ଯିବାକୁ
ମୋ ପ୍ରାଣେ ହେଉଛି କଷ୍ଟ,
ଛାଡ଼ି ଗଲେ ମୋତେ          କେତେ ଜନୟା ଏ
ଲୋଡ଼ିବ ହୋଇ ଉତ୍କଣ୍ଠ ।

ଅନୁମତି ଦେଲେ      ନାଅନ୍ତି ଏହାକୁ
ବୋଲି ହେଉଅଛି ମନ,
ନ ଦେଲେ ଛଡ଼ାଇ      ନିଅ ଏ ଶିଶୁକୁ
ମୋତେ ଛଡ଼ୁଛ ଯେସନ।"

ଶୁଣି ମୁନିବର      ମୃଗକୁ ଧଇଲେ
ନୟନୁ ବୁହାଇ ବାରି,
ବୋଇଲେ, "ମା ମୋର, ଜାଣିଲି ମୋ' ହୃଦ-
ବ୍ୟଥା ଅଛୁ ଜାଣି ପାରି।

ମୃଗ ଶିଶୁ ରୂପ      ଉଦସ୍ୱ-ପଦରେ
ଉଇଁଛୁ ସ୍ନେ ସ୍ନେହ-ରବି,
ବ୍ୟାପିବ ତା କର      ହସ୍ତିନା ନଗର
ରାଜ୍ୟ ଅଚଳ ଅଟବୀ।

ଅରୁଣ ଲୋହିତ      ଚରଣ ଛୁଇଁ ଏ
ମୃଗଶିଶୁ ଥାଉ ବନେ,
ଯାଅ ମା ଅଶ୍ରୁର      ଧୂଳିସାତ ହୋଇ
ଲୋଟୁ ତୋ ରଙ୍ଗ ଚରଣେ।"

ଜାନକୀକୁ ଗୃହେଁ      ବୋଇଲେ ମୁନୀନ୍ଦ୍ର,
"ଏବେ ତରୁ ଲତାମାନେ,
ତୁମ୍ଭ ପ୍ରିୟଜନ      ପଣୀ ଯାଉଅଛି
ଅଳ ପଳ ସନ୍ନିଧାନେ।

ଜଳ ପାନ କରୁ ନ ଥିଲ ଯେ ଆଗେ
ତୁମ୍ଭଙ୍କୁ ନ ଦେଇ ଜଳ,
ହେଉଥିଲ ତୁମ୍ଭ ଅଙ୍ଗେ ନବ ପୁଷ୍ପ
ଦେଖିଲେ ମୁଦେ ବହୁଳ ।

ତହିଁ ପାଇଁ ପୁଣି- ବୃନ୍ତ ଦେବା ବେଳେ
କରୁଥିଲା ମହୋତ୍ସବ,
ବେଳେ ଯଉନରେ ରଙ୍ଗୁ ଥିଲ ତୁମ୍ଭ
ନୈସର୍ଗିକ ସଜ୍ଜସ୍ତବ ।

ଭୂଷଣରଙ୍ଗିଣୀ ହୋଇ ଯେ ତୁମ୍ଭର
ଅଙ୍ଗଭଙ୍ଗ ହେବ ଜାଣି,
କେବେହେଁ ତୁମ୍ଭର ପଲ୍ଲବ ଛେଦନେ
ବଢ଼ାଇ ନ ଥାଏ ପାଣି ।

ତୁମ୍ଭେମାନେ ଏବେ ପ୍ରସନ୍ନ ଭାବରେ
କର ଅନୁମତି ଦାନ,
ମଙ୍ଗଳମୟ ଶୁଭ- ମନ୍ତ୍ର ହେଉ ସେହି
ଶକୁନ୍ତଳାର ପ୍ରସ୍ଥାନ ।

ସରୋଜ-ଶୋଭିତ ସରୋବରେ ହେଉ
ଗତି-ପଥ ମନୋହର,
ପଦ୍ମ-ବାସ ବହୁ ଗନ୍ଧବହ ହେଉ
ଅନୁକୂଳ ସୁଖକର ।

ନବ ନବ ଦୃଶ୍ୟ ଉଦ୍ୟାନପଥରେ
ଦେଖ୍ ତାର ମନୋରମ,
ଯାତ୍ରାଜନ୍ୟ ଶ୍ରମ ଲାଘବୁ ଆତପ-
ତାପ କରୁ ଉପଶମ ।"

କୁମାରୀ ବୋଇଲା, "ତାତ, ମୋ' ସଙ୍ଗରେ
ନ ଯିବେ କି ସଖୀଦ୍ୱୟ ?"
ମହର୍ଷି ବୋଇଲେ, "ହୋଇଲାଣି ତାଙ୍କ
ବିବାହର ଯୋଗ୍ୟ ବୟଃ ।

ରାଜସଦନକୁ ନଗରକୁ ତାଙ୍କ
ଯିବାର ଉଚିତ ନୁହେ,
ତୋ ସଙ୍ଗେ ଗୌତମୀ ଯିବେ, ଆଶ୍ରମରେ
ରହିବେ ତୋ ସଖୀ ଦୁହେଁ ।"

କୁମାରୀ ବୋଇଲା, "ପିତୃକୋଳ ତେଜି
ସଖୀଙ୍କି ଅନ୍ତର କରି,
ଅପରିଚିତା ନାରୀ- ମଣ୍ଡଳୀରେ କେମନ୍ତେ
ରହିବ ଜୀବନ ଧରି ।

ମଳୟ-ପର୍ବତୁଁ ଉନ୍ମୂଳିତ ହୋଇ
ଚନ୍ଦନ-ଲତା ଯେସନ
ଉଦ୍ୟାନକୁ ଗଲେ ଝାଉଁଳି ପଡ଼ଇ,
ମୋ' ଦଶା ହେବ ତେସନ ।"

ମହର୍ଷି ବୋଇଲେ, "ତୋତେ ଲଭ କର
ରାଜ-ପୁର-ନାରୀମାନେ
ତୋ ପ୍ରାଣ ତୋଷିବେ ମଧୁର ଭାଷଣେ
ମଧୁମୟ ସୁପକ୍ୱାନେ ।

ପଲଙ୍କ ସମ୍ପତ୍ତି- ବନେ ମନ ତୋର
ସୁଖେ କର ପରବେଶ
ଅଷ୍ଟମ ପୂରଣ ପାଇଁ ଅବସର
ତୋତେ ଦେବ ନାହିଁ କ୍ଲେଶ ।

ପ୍ରାଚୀ କୋଳେ ରବ ପରାଏ ତୋ କୋଳେ
ଶୋଭିତ ହୋଇ ନନ୍ଦନ
କର ଦେବ ରାଜ- ପୁର ଅଲଙ୍କୃତ
ତୋ ହୃଦ-ମୁଦ-ବର୍ଦ୍ଧନ ।"

ସଖୀଏ ବୋଇଲେ, "ଆମ୍ଭଙ୍କୁ ସଜନି,
ସମର୍ପୁଛୁ କାହା କରେ ?
ମନେ କରୁଥିଲୁ ରାଜ-ଉପବନେ
ବିଚରଣ ସମୟରେ ।"

ସୁଶୀଳା ବୋଇଲା, "ତରୁ ଲତା ଭାର
ରହିଲା ତୁମ୍ଭ ଉପରେ,
ନ ଭୁଲିବ ମୋତେ ମୃଗ-ଶିଶୁ ମଣି
ତୁମ୍ଭର ସ୍ନେହ-କୂପରେ ।

ଟାଣୁଁ ଗଲ୍ଦ ବୋଲ      ଜାଣୁଛି ଅନ୍ତରୁଁ
    ଅନ୍ତର ମୁଁ ହେବ ନାହିଁ,
ନଅଳୀ ମୂଳରେ      ଜଳ ସେକ କର
    ଦେଉଥିବ ମୋହୋପାଇଁ ।”
ମୁନ ପାଦେ ପଡ      ଉଠି ଶକୁନ୍ତଳା
    ଆଲିଙ୍ଗିଲା ସଖୀଦ୍ୱୟେ,
ଚଳ୍ଚଳ ଦୁକୂଳ      ଛନ୍ଦାଇ ଲୋଚନେ
    ଲଗାଇ ହୃଦ ହୃଦୟେ ।

ପ୍ରିୟମ୍ବଦା ସଖୀ      ବୋଇଲା, “ସଜନ,
    ପାଦୋରକୁ ଅଙ୍ଗୁଳ୍ୟ,
ସେ ତୋ ପ୍ରଣୟୀର      ଆଦ୍ୟ ଉପହାର
    ଯତନେ ସଙ୍ଗେ ନଅ ।
ତାକୁ ନ ଦେଖିଲେ      ପୀରତି ଲିପବ
    ମଣି ପାରେ କାନ୍ତ ମନ,
କାନ୍ତ-ପ୍ରୀତି-ରୂପେ      ନାମାଙ୍କର ତାଙ୍କ
    ଜଗଥିବୁ ଗଣ୍ଠି ଧନ ।”
‘ଦୂର ହେଲୁ ଏବେ’      ବୋଲ ପ୍ରିୟମ୍ବଦା
    ଅଜସ୍ତ୍ରା କାନ୍ଦ କାନ୍ଦ,
ଅବାକ୍ ସଙ୍ଗିନୀ      ଦୁକୂଳ ଅଞ୍ଚଳେ
    ଅଙ୍ଗୁସ୍ତ୍ର ଦେଲେ ବାନ୍ଧ ।

ଲେଖି ମୃଦୁ ସ୍ୱରେ    ପଞ୍ଜିଟିଏ ମୁଞ୍ଜ
ଦେଇ ଶାରଙ୍ଗ କରେ
କହିଲେ ନନ୍ଦନୀ    ସଙ୍ଗେ ତା' ଦେବାକୁ
ଦୁଷ୍ମନ୍ତଙ୍କ ନିକଟରେ ।
ପ୍ରଣତ କୁମାରୀ    ବୋଇଲା, "ପିଅର,
କେବେ ପୁଣି ଦରଶନ
କରିବ ତୁମ୍ଭର    ଚରଣକମଳ
ଆସି ଏହୁ ତପୋବନ ?"
ମହର୍ଷି ବୋଇଲେ,    "ଯେ ତାଙ୍କେ ଶୋଭିବ
ତୋ ପୁତ୍ର-ମସ୍ତକେ ଛତ୍ର,
ସେହୁ ଛତ୍ର-ଛାୟା-    ତଳେ ସ୍ନିଗ୍ଧ ହେବ
ସସାଗରା ବସୁମତୀ ।
ତୋ ପତି ଏ ବନେ    ବାନପ୍ରସ୍ଥରୂପେ
ହେବେ ମୋକ୍ଷ-ଅଭିଳାଷୀ,
ମୋକ୍ଷପାଇଁ ତୁହି    ତାଙ୍କ ପଦ-ସେବା
କରିବୁ ଏ ବନେ ଆସି ।"
ଅଛି ଯେତେ ଥିଲେ    ତାପସ ତାପସୀ
ସମସ୍ତଙ୍କୁ ଶକୁନ୍ତଳା
ତା ପଦ-ବନ୍ଦନ    ତା ମୁଖ ଚୁମ୍ବନ
ତାହାକୁ ଅଶ୍ଳେଷ କଲା ।

### ଚତୁର୍ଥ ସର୍ଗ

ଚଳିଲେ ଗୌତମୀ ଶକୁନ୍ତଳା ସଙ୍ଗ
ଶାରଦ୍ଵତ ତାଙ୍କ ଆଗେ,
ଚଳିଲେ ତାହାଙ୍କ ପୃଷ୍ଠରକ୍ଷୀ-ରୂପେ
ଶାର୍ଙ୍ଗରବ ପଛଭାଗେ ।

ପ୍ରଣୟ-ସୌରଭ କ୍ରମେ ଉଚ୍ଛାଳଇ
ତୋଳି ଶକୁନ୍ତଳା ମନେ
ପଥକଷ୍ଟ ଜଳ- ପ୍ରାବଲ୍ୟକୁ ତାହା
ବଢାଇ ଚଲନ୍ତ ଗମନେ ।

ପଞ୍ଚମେ ଅପିଲେ ମୃଦୁ ମହାମନା
ସୁଖ ଦୁଃଖ ଭର ମନ,
ତାଙ୍କ ସଙ୍ଗେ ଆସି ତାପସ ତାପସୀ
ଭଲେ ନିଜ ନିଜ କର୍ମ ।



# ପଞ୍ଚମ ସର୍ଗ ।



## ( ପୁଷ୍ପ କୀଠ )



ହସ୍ତିନା-ଭୂପତି ବସେ କର'ଛନ୍ତି
ରତ୍ନମୟ ସିଂହାସନେ,
ସତେ କି ଧରମ- ମୂର୍ତ୍ତି-ପ୍ରତିବିମ୍ବ
ଉଜ୍ଜ୍ୱଳ ଜ୍ଞାନ-ଦର୍ପଣେ ?

ଉଭୟ ପାର୍ଶ୍ୱରେ ଶୋଭନ୍ତି ସଚିବ
ଅବ ସଭାସଦଗଣ,
ନୀତିଜ୍ଞ, ବିବେକାଢ୍ୟ ରହିଛନ୍ତି ଯେତେ
ଧରି ନର-ଅପଘନ ।

ସଭ୍ୟ ସହ ନୃପ— ବଦନ ପ୍ରସନ୍ନ
ଉଜ୍ଜ୍ୱଳ ନିର୍ମଳ ଶାନ୍ତ,
ଯଥା ଶାରଦୀୟ ନକ୍ଷତ୍ର-ମଣ୍ଡଳ-
ମଣ୍ଡିତ ରଜନୀକାନ୍ତ ।

ସିଂହାସନ ପାଦ— ପୀଠରେ ଉଜ୍ଜ୍ୱଳ
ରତ୍ନରାଜି ଥାନ୍ତି ଲାଗି

ସୁଜନ୍ୟ-ମଣ୍ଡଳ— ମୁକୁଟ-ରତନେ
ପଉଗଜ ଦେବାଲାଗି ।

ଯାଗେ ସହସ୍ରଘଟେ ଭରା ହୋଇଥାଏ
ଯମୁନାର ସ୍ୱଚ୍ଛ ଜଳ
ଯାଚକ-ଭୂସୁର ବାଞ୍ଛା-କଳ୍ପତରୁ
କରିବାପାଇଁ ସଫଳ ।

ଜପ ଯଜ୍ଞ କରେ ପ୍ରଚଣ୍ଡ ପ୍ରଭାବେ
ଭାଙ୍ଗୁଥାଏ ଭୁଜଦଣ୍ଡ,
ଦୂରୁ ଦେଖି ତାହା ଦସ୍ୟୁ-ବର୍ଗ-ଗର୍ବ
ହୋଇଯାଏ ଖଣ୍ଡ ଖଣ୍ଡ ।

ଅଚଳ ସକଳ ଦେଉଥିଲେ ଯେଉଁ
ଗଜମୁକ୍ତା ଉପହାର,
ବାଛି ବାଛି ଯେଉଁ ରତ୍ନ ଉପହାର
ଦେଉଥିଲା ପାରାବାର,

ସଭାମଣ୍ଡପରେ ଝୁଲୁଥିବେ ତାହା
ହୋଇ ଅବନତମୁଖ,
ପ୍ରତିଭାତ ହେଉ- ଥିଲେ ଲଭ ସୁଜ-
ଦଣ୍ଡର ଚନ୍ଦ୍ର-ମୟୂଖ ।

ନୃପ ଶତ୍ରୁଜିତେ ସ୍ତବପ ଏକାନ୍ତ
'ଖ୍ୟାତ ସିଦ୍ଧ ରେଣ ବର୍ପ

ଦୂରେ ଲୁଚିଥିଲେ     ଗରୁଡ଼ ଗର୍ଜନ
ଶ୍ରବଣରେ ଯଥା ସର୍ପ ।
ହୃଦୟ ଭିତରେ     କ୍ଷମା ନରେଶଙ୍କ
ହୃଦୟ ଉପରେ କ୍ଷୋଭ
ପଞ୍ଚଶରରୂପେ     ଥାଇ କହୁଥିଲେ
ସୌଭାଗ୍ୟେ ସାର୍ବଭୌମ ।
ଅଛନ୍ତି ପ୍ରବଳ     ଥିଲା ତାଙ୍କ ଲୋଭ
ଗୁଣିଗଣଙ୍କର ଗୁଣେ,
ଲହରୁ ଶିଶିର-     ବିନ୍ଦୁ ମଣୁଥିଲେ
ମାନବ-ସ୍ୱଭାବ ଗୁଣେ ।
ଜୀବନେ ତାଙ୍କର     ସତ୍ୟ ସଙ୍ଗ ଯଶ
ନିତ୍ୟ କରୁଥାନ୍ତି କଳି,
ସୁଶ୍ରୀତା, ଉଚ୍ଚତା     ଗୁଣରେ ଥିବାର
ଏକରୁ ଅପର ବଳି ।
ଲୋକଙ୍କ ବିବାଦ     ବର୍ଣ୍ଣନେ ନିପୁଣ
ଥିଲେ ନିଜେ ନରପତି,
ସତ୍ୟ—ଯଶ ବାଦ     ବର୍ଣ୍ଣର ସମତା
ଦେଇଥିଲେ ଲୋକ ପ୍ରତି ।
ପର ପରଶଂସା     ଶୁଣିଲେ ନୃପତି
ଦେଉଥିଲେ ଅଙ୍କାଦରି,

ତାଙ୍କ କାର୍ଯ୍ୟ ଭଲ          କାର୍ଯ୍ୟ କରିବାକୁ
କରୁ ଦେଉଥିଲେ ଚିତ୍ତ ।
ଅବସ୍ଥାନେ ଯଥା          ଚଳନ୍ତି ଜଗତ,
ଅଚ୍ୟୁତାଙ୍କ ବଳେ ଜାତ,
କରଗ୍ରାହୀ ନୃପ          ପ୍ରଜାହିତେ ତଥା
ରହୁଥାନ୍ତି ଅବଶ୍ରାନ୍ତ ।
ନିଜେ ଦୁଃଖ ସହି          କରୁଥିଲେ ସଦା
ପ୍ରକୃତି-ପୁଞ୍ଜର ଦୁଃଖ,
ପାଦପ ଯେମନ୍ତ          ଛାୟା ଦିଏ ସହି
ପ୍ରଚଣ୍ଡ-ଭାନୁ-ମୟୂଖ ।
ଶାସନେ ତାଙ୍କର          ଆଲୋକ ଥିଲେହେଁ
ତମ ଥିଲା ଘୋରତମ,
ସେହି ତମ ଭେଦ          କୁପଥଗାମିନେ
କେହି ନୋହୁଥିଲେ କ୍ଷମ ।
ସଭା ସମ୍ମୁଖରେ          ଉଭା ହୋଇ ଆସି
କର ଯୋଡ଼ି ପ୍ରତିହାରୀ
ଜଣାଇଲା, "ଦେବ,          କଣ୍ୱ ଆଶ୍ରମରୁ
ଆସିଛନ୍ତି ତପସ୍ୱୀ ।
ଦୁଇଜଣ ଋଷି-          ଶିଷ୍ୟ ଛନ୍ତି ପୁଣି
ନାରୀ ଛନ୍ତି ଦୁଇ ଜଣ,

କେ ଜାଣି କି କାର୍ଯ୍ୟେ ଇଚ୍ଛା କରୁଛନ୍ତି
ଶ୍ରୀମନ୍ତଙ୍କ ଦରଶନ ।

ତାଙ୍କ ମଧ୍ୟରେ ଏକ ଅଛି ବାଳା,
ତରୁଣୀ ଅତି ଅପରା,
ମନେ କରଇଁ ସେ ଋଷିକନ୍ୟା ନୁହେ,
ହେଲେ ବା ହେବ ଅପସରା ।

ତାପସଙ୍କ ମଧ୍ୟେ ତରୁଣୀର ରୂପ
ଦିଶୁଛି ଲାବଣ୍ୟମୟ,
ପାଣ୍ଡୁର-ପତ୍ର- ମଧ୍ୟେ ମନୋହର
ଯଥା ନବ କିଶଳୟ ।

ପଠାଇଅଛନ୍ତି ପରା ମୁନିବର
ପତ୍ର ଦେଇ ତାଙ୍କ ହସ୍ତେ,
ଆଜ୍ଞା ହେବ ଯେବେ ଉପଗତ ହେବେ
'ଶ୍ରୀମୁଖେ ଆସି ସମସ୍ତେ ।"

ପ୍ରତିହାରୀ କଥା ଶୁଣି ମହାରାଜ
ଚମତ୍କାର ମଣି ମନେ
ବୋଲନ୍ତେ, "ସତ୍ୱର ଆଣ ତାଙ୍କୁ ମୁହିଁ
ଯାଉଛି ଅଗ୍ନିଭବନେ ।"

ଶକୁନ୍ତଳା ଏଣେ ସିଂହଦ୍ୱାରେ ଥାଇ
ଚିନ୍ତୁଛନ୍ତି ଅନ୍ତରେ,

“ଏତୁଲଣି କାନ୍ତ ଅଭିଷିଂଚ ପଣ
ମୋ' ଅଟିକା ଉଦନ୍ତରେ ।
ଯେ ଜାଣି ଆପଣେ ନଭେ ଝଷି ଭୃସି
ନେବେ ମୋର ଭର ଧର,
ଅଥବା ପାଦରେ ସେହ ସିକାଲୁଗି
ପଠାଇବେ ପତ୍ରଚାଗ ?

ଯାହା ହେଉ ଅନ୍ତ ସ୍ୱାମୀ ଚରଣରେ
ଅଧିକ ବିଲମ୍ବ ନାହିଁ ,
କେଉଁଠାକୁ ନେବେ, ହେବ ସୁସଜ୍ଜିତ
କେଉଁ ଗୃହ ମୋହୋପାଇଁ ?
କେତେ କେତେ ସର କେମନ୍ତ ସୁନ୍ଦର
ଶାଳଭରୁ ଜଣେ ଉଭ,
କେମନ୍ତ ଧବଳ ରାଜହଂସ କାନ୍ତି
ଏହା ତୁଲେ ହେବ ତୁଛ ?

କେମନ୍ତେ ଚଳିବ ଭଏ ଶ୍ୱଶୁର ଦେବୀ,
ଭଏ ବା ଥିବେ ନଣନ୍ଦ,
ତାହାକୁ ସାଦରେ ଆଲିଙ୍ଗିବ ତହୁଁ,
ବନ୍ଦିବ ତାହାର ପଦ ?”
ବୃଥା ତୋଷା ଏବେ ଲବଙ୍ଗା ସ୍ୱବେଳ !
ଦିବିରଶ୍ମି ଅସ୍ତ ଆଜ,

ଭବିଷ୍ୟତ-ସୁଖ- ପ୍ରବେଶ-କ୍ଷମତା
ଲଭି ତାହିଁ ନରଣ୍ଣାନ ।
ଏମନ୍ତ ସମୟେ ପ୍ରତିହାରୀ ଆସି
ଜଣାଇ ରାଜସମ୍ମତ
ଆଗନ୍ତୁକ ଗୃହ- ଜଣେ ଘେନିଗଲା
'ଅଗ୍ନିଗୃହେ' ନୃପ କନ୍ତ ।
ଦେଖିଲେ ନରେଶ ତାପସଙ୍କ ମଧ୍ୟେ
ରୂପବତୀ ସୁକୁମାରୀ,
ପ୍ରସ୍ତର ଭିତରେ ସ୍ୱର୍ଣ୍ଣରେଖ ପରି
ପଙ୍କଜେ ହେଉଛୁ ବାରି ।

ତାପସମାନଙ୍କୁ ପ୍ରସନ୍ନବଦନେ
ରାଜା କରି ସମାଦର
ପୁଛିଲେ କୁଶଳ ତାଙ୍କ, ମୁନିଙ୍କର,
ତଥା ଆଶ୍ରମପଦର ।

ଶାରଙ୍ଗବ ଦେଲେ ଉତ୍ତର କୁଶଳ
ଥିବାର ସେ ସମୁଦାୟ,
ପୁଣି ପଚାରିଲେ ନରେଶ ତାଙ୍କର
ଆଗମନ ଅଭିପ୍ରାୟ ।
ଶାରଙ୍ଗବ କଣ୍ୱ- ପ୍ରେରିତ-ପତ୍ରିକା
ଦେଲେ ନରବର କରେ,

ମୃତ ଫେଇ ମୃତକ    ଯେତ୍ତେ ପଡ଼ି ନୃପ
ବନ୍ଦିତ ହେଲେ ଅନ୍ତରେ ।
ଶକୁନ୍ତଳା ଆଶା    ଦଗ୍ଧ ହୋଇ ଯିବ
ଅନଳ-ସ୍ମୃତି-ଅନଳେ,
ଏ ବିଶ୍ୱାସ ଥିଲା-    ମାତ୍ର ଥିଲା ନାହିଁ
ତାହାର ହୃଦ-କମଳେ ।
ମୃଣ ପଢ଼ି ଥରେ    ଶୂନ୍ୟେ ଅନାଇଲେ
ସେ ପଦ ପଢ଼ିଲେ ପୁଣି,
କେମନ୍ତ କଥା ଏ    ବୋଲି ପୁନଃ ପୁନଃ
ମନେ ମନେ ହେଲେ ଗୁଣି ।
ବିଷଣ୍ଣ ନୟନେ    ଶକୁନ୍ତଳା ପତ୍ର
ଚୁହିଁ ଚୁହିଁ ବାରମ୍ବାର
ବିଷଣ୍ଣ ହୃଦୟେ    ପୁଣି କହିଲେ,
"ଏ ତ ବଡ଼ ଚମତ୍କାର !
ଶତ ନୃତ୍ୟେ ଶଠ-    ଜନ ଶତ ଶଠ
ଶାଠ୍ୟ କଲେ ଏ ସଂସାରେ,
ତହଁ ଶତାଂଶରେ    ଶାଠ୍ୟ ଦେଖା ଗଲେ
ଏକା ସାଧୁ-ଜନଠାରେ ।
ଶତ ଶାଠ୍ୟ ବଳି    ମୂଢଙ୍କ ପକ୍ଷରେ
ପୂରିଅଛି ଯେଉଁ ଶାଠ୍ୟ.

ମୂଢ଼ ହେଲେ ଜନ୍ତୁ      ଛଣ୍ଡାଇ ମରନ୍ତେ
ଏ କି ଶ୍ରାବ୍ୟ ଏ କି ପାଠ୍ୟ ?
ସତ୍ୟ ନା କୁହୁକ      ବୁଝି ପାରୁ ନାହିଁ,
କି ହେବ ଏଥି ଉତ୍ତର ।"
ପଠନଦ୍ରୁମ ନା      ବୋଲି ଆଉଥରେ
ପଢ଼ିଲେ ପୁଣି ପତ୍ରର ।
ଯାହା ପଢ଼ିଥିଲେ      ତାହା ଲେଖା ଅଛି,
ସ୍ପଷ୍ଟ ବିଚାର କଲେ,
"ନିଶ୍ଚୟ ଦଇବ      ମାୟା ଏହା ମୋତେ
ଠକିବାକୁ କଳ୍ପିଗଲେ ।
ନ ହେଲେ ଏପରି      ସ୍ୱପନ ହୁଏ କି
ଅବନୀ ତଳେ ସମ୍ଭବ ?
ପୁଣି ବିପ୍ର କଣ୍ୱ—      ମୁନିଙ୍କ ଦୁହିତା
ହେବା ତହିଁ ଅସମ୍ଭବ ।
ମୂଢ଼-କନ୍ୟା ବେଢ଼େ      ମଣ୍ଡିତ ହୋଇଛି
ସ୍ୱର୍ଗୀୟ ଭୂଷଣରାଶି,
ମୁଁ କି ଏଡ଼େ ମୂର୍ଖ,      ଏତକ ନ ବୁଝି
ଏ ପକ୍ଷେ ହେବି ବିଶ୍ୱାସୀ ?
ଅଳ୍ପ ଜ୍ଞାନ, ଅଳ୍ପ      ବିବେକ, ମୋ' ହୃଦେ
ତଥି ଦୃଶ୍ୟ ମୋତେ ବଳ,

ଜଡର ଉତ୍ତର ଦେବି, ଏ ଘଟଣା
ହେଉ ସତ୍ୟ ଅବା ଛଳି ।"

ବୋଇଲେ, "ତାପସ- କୁମାର, ପଠନେ
ବୁଝିଲ ପୃଚ୍ଛିତା ମର୍ମ,
ଯାହା ଲେଖି'ଛନ୍ତି ମୁନି ତାହା ମୋର
ଧର୍ମ ନୁହେ, ନୁହେ କର୍ମ ।"

ଏ ନାରୀ ସହିତ ଯେବେ କାହିଁ ମୋର
ହୋଇ ନାହିଁ ପରିଣୟ,
ପୁରୁବଂଶୀ ଆଗେ ଦେଖା ଗଲା ଆଜି
ଅଭିନବ ଅଭିନୟ !

ଯଦି ଗର୍ଭବତୀ ନ ଥାନ୍ତା ଯୁବତୀ
ନୋହିଥାନ୍ତା ବିବାହିତା,
ତେବେ ମହର୍ଷିଙ୍କ ଆଦେଶ ପାଳନେ
ନ ଥିଲା ମୋ କିଛି ଚିନ୍ତା ।

କେମନ୍ତେ ବଳିଲା ମନ ମୁନିଙ୍କର
ଜାଣେ ହୋଇ ପୁରୁବଂଶୀ,
ସ୍ୱକୀୟ ବଂଶର କୀର୍ତ୍ତି-କଳାକର-
ଅଙ୍ଗେ ଢାଳିବାକୁ ମସୀ ।"

ଶାରଦ୍ବତ ତହି ବୋଇଲେ, "ନରେଶ,
ଯବୁ କଥା କି ଅନୃତ ?"

ହସି ନରପତି ବୋଇଲେ, "ତାପସ,
'ଇନ୍ଦ୍ରଜାଲ ଏ ଚତୁର ।'"

ଶାର— "ଦେଖ ଶକୁନ୍ତଳା, ଫିଟାଅ ନରେନ୍ଦ୍ର-
ନୟନ-ଭ୍ରମସରଣୀ,
ଛଡପତ୍ର ଯାର କେଉଁରୂପେ ତୁମ୍ଭେ
ହୋଇଛ ତାଙ୍କ ଘରଣୀ ?"

ଶକୁ— 'ବୁଝି ପାରୁ ନାହିଁ, ସତ୍ୟ କି ଏ କଥା
କରୁଅଛୁ ପରିହାସ,
ମୋ' ମନ ପରୀକ୍ଷା କରୁ'ଛନ୍ତି ବୋଲି
ହେଉଛି ଦୃଢ଼ ବିଶ୍ୱାସ ।
କେତେ ଲୋକେ ଭାଷ କରନ୍ତି ନରେଶ
ବୁଝିବ ବୁଝିବା ଲୋକ,
ଅଳ୍ପ ଅଳ୍ପ ଅର୍ଥ ବହୁ ବିକଟର,
ଦେଖାଇଥାଏ ତାଙ୍କ ଶ୍ଳୋକ ।"

ଦୁଷ୍ମନ୍ତ— "ସତେ କି ସୁନ୍ଦର, ଚିହ୍ନି ଅଛ ମୋତେ,
ମୁଁ ଧରିଛି ତୁମ୍ଭ କର ?
ସତେ କି କଣ୍ଟକ- ରୂପେ ଦେଖି ଅଛ
ବଦନକୁ ଦୁଷ୍ମନ୍ତର ?"

ଶକୁ— "ଯେଉଁ ବଦନ ମୋ' ଜୀବନ୍ତ ଦର୍ଶିଛ
ଶୂନ୍ୟ ଅଛି ସେହି ସୂର୍ଯ୍ୟ

କମଳନୀ କେବେ  ରକ୍ତପିଅଛୁ କି
ନ ଗୃହୁଁ ଜଳେ ଭ୍ରମରଂ ?"

ଦୁଷ୍ମନ୍ତ— "ଭଲ କହ ଥରେ  ଦେଖ କି ନା ମୁଁ କି
ଯାଇଥିଲି ତୁମ୍ଭ ପାଶ ?
ତୁମ୍ଭ ପଦରେଣୁ  ମୁହିଁ ଥିବାର କି
କରୁଁଛ ଦୃଢ଼ ବିଶ୍ୱାସ ?"

ଶାର— "ଦେଖ ନା ନୃପଙ୍କ  ବଦନ, ଶବାହ-
କଥା କର ପ୍ରତିପନ୍ନ ।"

ଶକୁ— "ସ୍ୱାମୀ ଥିବା ଯେବେ  ସମ୍ଭବ ନୃପେନ୍ଦ୍ର
ଦେଖିବି, କାହୁଁ ଲପନ ?
ତେବେ ତାଙ୍କ ପ୍ରୀତି-  ଉପହାର ଅଙ୍ଗୁ
ନାମାଙ୍କିତ ଅଙ୍ଗୁରୀୟ,
ପ୍ରଣୟ-ପ୍ରମାଣ  ତାହା ମୋର ନେଇ
କରପଦ୍ମେ ତାଙ୍କ ଦିଅ ।"

ନରେଶ ବୋଇଲେ,  "ତାହା ଯଦି ଅଛି
ଏତେ କଥା କାହିଁପାଇଁ ?"
ହୃଦସ୍ଥ ଚାହାଁଲେ  ଦେଖିଲା ଅଙ୍ଗୁଳେ
ଗଣ୍ଠି ନାହିଁ, ମୁଦି ନାହିଁ ।
ଏ କାଳ ସେ କାଳ  ଦେଖିଲେ ବ୍ୟାକୁଳେ,
'ସଖୀ କାହିଁ ମୁଦ୍ରିକାଇ,

ପୂର୍ବରୁ ନୃପବ କରି ଦେଇଅଛ
ନିଜ ପଥ ପରିଷ୍କାର ।
ଶୁଣି ନରପତି ସଭାରେ ବୋଲନ୍ତି,
"ଦେଖ କର ଅନ୍ୱେଷଣ,
ପ୍ରମାଣିତ ହେଉ, ଦୁଷ୍ମନ୍ତ ନୃପତି
କରନ୍ତୁ ମିଥ୍ୟା-ଭାଷଣ ।
ଦେଖ ହେ ତାପସ, ବଳମ୍ଭି କାନ୍ଦି କି,
ଦେଖାଅ ମୁଦ୍ରିକା ଅଣି,
ହେବ ଏହିକ୍ଷଣି ତୁମ୍ଭ ତପସ୍ୱିନୀ
ହସ୍ତିନାର ପାଟରାଣୀ ।"
ଅପମାନଭରେ ଶକୁନ୍ତଳା ହୃଦ
କମ୍ପିଗଲା ଥର ଥର,
ନୟନଯୁଗଳୁଁ ଅଶ୍ରୁ ଜଳ ଧାର
ବହିଗଲା ଦରଦର ।
ସଖୀ କହୁଥିଲା, ଯାହା ତା ପ୍ରାଣର
ପ୍ରଣୟ-ମନ୍ଦିର-ଭିତ୍ତି,
ହଜାଇ ତା ହେଲେ ଅସମ୍ଭବ ମର୍ମେ
ହେଲା ରହିବାର ବସ୍ତି ।
ଅନ୍ଧକାରମୟ ଦିଶିଲା ଜଗତ,
ବୁଝି ନ ପାରଇ ଭାଷା,

ବେଣୁ ପବଣର ଚୂଡ଼ାରୁ ଉଡ଼ିଗଲା
ହେମାଳସ୍ଥ ମୂଲ୍ୟ ଆଶା ।
ରାଣେ କମ୍ପାଇଲେ ଉପବନେ ତାଙ୍କ
ଅନ୍ତ କି ନା ଅଜ୍ଞ ପ୍ରାଣ,
କାହିଁ ଯିବେ ଅବା କେମନ୍ତେ ଉଦ୍ଧବେ,
ତହିଁ କି ନ ହେଲା ଜ୍ଞାନ ।
ଛିନ୍ନ ପକ୍ଷୀ ପକ୍ଷୀ ଗଜଗାମୀ ଧୀର
ପଡ଼ିଗଲେ ଭୂମିତଳେ,
ଯନ୍ତ୍ରଣ ଅଛି କି ନାହିଁ ବୋଲି ମୃଗ
ଚହିଁଲେ ଅତି ବିକଳେ ।
ହାହାକାର କରି ତାପସ-ଯୁଗଳ
ବଦନେ ସିଞ୍ଚିଲେ ଜଳ,
ଦେଖିଲେ ନାସିକା- ବାୟୁ ଅଛି ଚଳୁ
ନୟନ-ତାରା ନଶ୍ଚଳ ।
ନୃପତି ବୋଇଲେ, "କାହିଁକି କରୁଛ
ଏ ଦାରୁଣ ଅଭିନୟ,
ଚେତ ଲଭ ଆଶା ଅଛି ତାହା ବେଗେ
କହ ନା କର ନିଶ୍ଚୟ ?"
ଶାର୍ଙ୍ଗରବ କ୍ରୋଧେ ବୋଇଲେ, "ଅମୃତ
କାହିଁ ଥିବେ ପଣେ ଅଣ,

ଏହୁ ଅଭିନୟ- ଅଧିନାୟକର
ହେବ ଏହା ସର୍ବନାଶ !

ଆବାଲ୍ୟ ଆଶ୍ରମ- ଲାଳିତା ସରଳା
ମାତୃବତ୍ସ ଦେବାବାଣୀ,
ହାୟ ରେ ଦଇବ, ହାୟ ଧର୍ମଦେବ,
ଏଥି ଶୁଣାଇଲ ଅନ୍ତ !

ପର-ପ୍ରବଞ୍ଚନା ଅବଳା-ଗଞ୍ଜନ
ହେଲା ଏବେ ରାଜଧର୍ମ,
ଲକ୍ଷ୍ମୀ ଦେବ, ତୁମ୍ଭେ କେଉଁ ଲୋକେ ପଡ଼ି
ଦେଖ ପାରୁ ନାହିଁ ମର୍ମ୍ମ !"
ବୋଇଲେ ନରେଶ, "ତରୁଣ ତାପସ,
ତରୁଣେ ନୋହଇ କ୍ରୋଧ
ବାଳଚପଳତା କଁପା ଦେଖାଉଛ
ନା ନେଇ ବୟସ୍ତବୋଧ ?
ତରୁଣୀର ଦଶା ଦର୍ପଣେ ସହସା
ତନୁ ହୁଏ ଲୋମାଞ୍ଚ,
ମଣଇଁ, ମୋ ନାମ କହୁ କେହୁ ତାକୁ
କରଅଛୁ ପ୍ରବଞ୍ଚ ।

ଶୋଭାବନ ଶୋଭା- ସବତରେ ଦେବ
ହୋଇଯିବେ ନେତ୍ରାନ୍ଧତା,

କପଟେ ଲମ୍ପଟ    ହୃଦୟ ଗ୍ରାହୀ ଭଣ୍ଡି
ହୋଇଥିବ ନିମନ୍ତ୍ରିତ ।”
ଶାର୍ଙ୍ଗ — “ଦେବେ ଯେବେ ଲୋଭେ    ପଡନ୍ତେ କାହିଁକି
ନେଇଥାନ୍ତେ ତୁମ୍ଭ ନାମ ?
ଦିବ୍ୟ ରୂପ ବହି    ଲୁଣ୍ଠନ୍ତେ ନିଶ୍ଚୋଇ
ନ ପାରନ୍ତେ ସିଦ୍ଧକାମ ?”
ଦୁର୍ମନ୍ତ — “ସ୍ୱଭାବତଃ ନାରୀ    ଦେବେ ଏତେ ଲୋଡ଼ୁ-
ଥାଏ ନର-ପ୍ରୀତି-ପାଶ,
ନଳ ରୂପ ଧରି-    ଥିଲେ ଦେବେ ବହୁ
ଦମୟନ୍ତୀ-ଲୁବ୍ଧ-ଆଶ ।”
ଶାର୍ଙ୍ଗ — “ସତ୍ୟ ଅପଳାପ    ନ ହେଉ ସନ୍ତାପ
ନ ପଶୁ ସାଧୁ ଜୀବନେ,
‘ଏହା ଆମ୍ଭ ଶିକ୍ଷା    ଏହା ଧର୍ମ ଆଜ୍ଞା
ଏହା ଆମ୍ଭ କାର୍ଯ୍ୟ ମନେ ।’

କର୍ମଫଳ ପ୍ରାଣୀ    ଅବଶ୍ୟ ଭୁଞ୍ଜଇ,
କେ କରି ପାରିବ ଆନ ?
ଶତ ପ୍ରତିରୋଧ    ଲଙ୍ଘି ପଶିଆଏ
କର୍ମଫଳ ବଳବାନ ।

ରବି ଶଙ୍କୁତୁଲା    ଧର୍ମ ଅନୁରୂପ
କର୍ମଫଳ ଭବ ଭୋଗ,

ପୁଣ୍ୟ-କଳସ ।

ବୃଥା ଅମ୍ଭେ ଅଛୁ		ଜଳ ନ ପାଇବୁ
ଅପଧର୍ମ ଅନୁଯୋଗ ।
ଶାରଳତ ଭଇ,		'ଗୃହ ଅଘ ହୋଇ,
ରହୁ ନ ପାଇବା ଘରେ,
ଗୃହ ଜଳୁଛନ୍ତି,		ନ ହେଲେ ପଡ଼ିବା
ମହାପାପ ଆକ୍ରମଣେ ।"
ତାପସଙ୍କ ସଙ୍ଗ		ଚଳିଲେ ଗୌତମୀ
ଦୁଃଖିନୀକି ଦେଇ କାନ୍ତେ,
ଜ୍ଞାନ ଛାୟା ଲଭି		ମଣିଲା ଦୁଃଖିନୀ
ସମର୍ପିତ ହେଲା କାନ୍ତେ ।
ତାପସଙ୍କ ସ୍ତ୍ରୀ		କଲେତ ବୋଇଲେ
ଜଳପଣ ଉପହାସେ,
"ଧନ୍ୟ ହେ ତାପସ !		କର୍ମଫଳ ଲକ୍ଷି
ଦେଇ ଯାଉଛ ମୋ ପାଶେ ।
ପୁତ୍ରବଂଶ ହେବ		ବିସ୍ତୃତ-ବଶ୍ରୁତ-
ଭାରତ ଜାର ସନ୍ତାନେ,"
ଶୁଣି ବମ୍ଭଗ୍ଧାର		ଆଶା-ଲତା ନବ-
ପଲ୍ଲବିତ ହେଲା ପ୍ରାଣେ ।
'ଜାର'ଶବ୍ଦ 'ଯାର'		ବୁଝିଲା ଅବଳା
ଅକ୍ଷରଭେଦ ନ ଜାଣି,'

ଭୀମ-ବଜ୍ର-ନାଦ ନ ଗଣି ଚାତକ
ପାନ କରେ ଘନ-ବାରି ।

ଯେଉଁ ସୁଧାକରୁଁ ସୁଧା ପାନ କରି
ଚକୋର ଥାଏ ଜୀବନେ,
ସେହି ଚନ୍ଦ୍ରମାରୁ ଗରଳ ଝରିବା
କେମନ୍ତେ ଭାବିବ ମନେ ।

ଯେଉଁ ନୃପ-ପ୍ରେମ- ଜଳେ ନିମଜ୍ଜିତ
ହୋଇଅଛୁ ପ୍ରେମଶୀଳା,
କେମନ୍ତେ ମଣନ୍ତା ସେହି ପ୍ରେମଜଳ
ପାଲଟିବ ହିମଶିଳା ।

ସମୁଖେ "ତଥାସ୍ତୁ" ଉଚ୍ଚାରୁ ତାପସେ
ବାହାରିଗଲେ ଚଞ୍ଚଳ,
କାଳେ ପୁରୁବଂଶେ କୁନ୍ତୀର ଉଦରେ
ଫଳିଲା ସେହି ସୁଫଳ ।

ସାଧୁ ପ୍ରତି କରି ଉପହାସ କେହି
ପାଇ ନ ପାରନ୍ତି ପାର,
ସାଧୁ ଅଙ୍ଗେ ପଡ଼ି ଉପହାସ ପୁଣି
ସାଧିଥାଏ ଉପକାର ।

ଶକୁନ୍ତଳା ଯେଉଁ ଭାବରେ ବୁଝିଲେ
ତାହା ମଧ୍ୟ ନୁହେଁ ବ୍ୟର୍ଥ,

ପୂର୍ଣ୍ଣ ତାଙ୍କ ହେଲେ          ଜନନୀ-ମାନସ—
ସିଦ୍ଧି-ସାଧନେ ସମର୍ଥ ।
ସ୍ୱାର୍ଥ-ସାଧକ          ମଙ୍ଗଳ-ହୃଦୟେ
ହୃଦୟାନ୍ତ ଯେବେ ପଥ,
ବିଧାତା ମେ ଦୋଷ          କ୍ଷମି ସିଦ୍ଧ କରେ
ତାଙ୍କ ଶୁଭ ମନୋରଥ ।
ସନ୍ଧ୍ୟା ଉପଗତ          ହୋଇଗଲା ଆସି
ସମ୍ବର୍ଦ୍ଧନାର ଅବସରେ,
ପ୍ରତ୍ୟାଖ୍ୟାନ କଥା          ସବୁ ପରିହାସ
ବୋଲି ବୋଧ କଲେ ମନେ ।
ପରିହାସ-ପଟୁ          ନୃପମଣି ବୋଲି
ଜାଣି ତ ଥିଲେ ଦୁଃଖିନୀ,
ବିଷରୁ ପୀୟୂଷ          ଶୋଷେ ପିଇଲେ
ଥିବାରୁ ପ୍ରେମ-ଭିକ୍ଷିଣୀ ।
ଦେଖିଲେ ତାଙ୍କ          ବଦନର ଜ୍ୟୋତି
ବିମଳିତ ହେଲା କାନ୍ତି,
ରାଜଲକ୍ଷ୍ମୀ କି ଏ          ମୂର୍ତ୍ତିମନ୍ତ ବୋଲି
ରଜା ମନେ ଉପୁଜିଲା ଭ୍ରାନ୍ତି ।
ରାଜଲକ୍ଷ୍ମୀ ହିଁ          ହୋଇଥିଲା ତାଙ୍କ
ଜୀବନର ସହଚର,

ଏହି ରାଜଲକ୍ଷ୍ମୀ    ଦୂର ହେଲା କାଳୁ
ଦୁର୍ବହ ଦୁଃସହ ଭରେ ।
କର୍ତ୍ତବ୍ୟ ମୂଢ଼    ହୋଇ ମହାରାଜ
ରହିଲେ ବିଷମ କଷ୍ଟେ,
ଚିନ୍ତିଲେ ମନେ    ଦୁର୍ଦ୍ଦିନ ସହସା
ପଡ଼ିଗଲୁ ନାଗକଣ୍ଠେ ।
ନୃପ ଭାବ ଦେଖି    ପୁରୋଧା ବୋଇଲେ,
"ନରେନ୍ଦ୍ର ନ ହୁଅ ଖିନ୍ନ,
ତୁମ୍ଭର କୁମର    ଜନ୍ମିବ ଶୀଘ୍ରେ
ବହୁ ଚକ୍ରବର୍ତ୍ତୀ ଚିହ୍ନ ।
କେତେ ମୁନି କେତେ    ଗଣକ୍କ ଏ କଥା
କହୁଛନ୍ତି ବାରମ୍ବାର,
ସେହୁଟି କେବଳ    ଦୁର୍ଲଙ୍ଘ୍ୟ ଉପାୟ
କଣ୍ଟକ ପରିହାର ।
ଅପୂଜକା ହେବା —    ଯାଏ ବରଷେ ବା
ରକ୍ଷିତା ହେଉ ଯତନେ,
ତାପରେ ଗ୍ରହଣ    ଅବା ବର୍ଜନ
ଯା ହେବ ତୁମ୍ଭ ମନେ ।"
ସନ୍ତୋଷେ ସମ୍ମତ    ହୋଇଲେ ନୃପ
ତାଙ୍କ ସୁଦ୍ଧେ ରେବାପାଇଁ,

ସଜଳହୃଦୟା , ବିନମ୍ରବଦନା
ବାମା ତା ଜାଣଇ ନାହିଁ ।
ବାମାଙ୍କୁ ପୁରୋଧା ବୋଇଲେ, "ଆସ ମା,
ସଦନକୁ ଯିବା ଆସ,
ଧର୍ମବଳ ତୋର ସୁଖ ସମ୍ପାଦିବ,
ଧରମେ ରଖ ବିଶ୍ୱାସ ।"
ଚାଲିଲେ ପୁରୋଧା, ଗଲେ ଶକୁନ୍ତଳା,
ତାଙ୍କ ପଛ କରି ଲକ୍ଷ,
ଅଭାଗିନୀ ମନେ ଭାବେ ଯାଉଛନ୍ତି
ପ୍ରାଣେଶ-ନିବାସ-କକ୍ଷ ।
ଜାଣିଥାନ୍ତେ ଯଦି ଗତ ହେଉ ନାହିଁ
ପତିଙ୍କ ପୁଣ୍ୟ ପ୍ରାସାଦ,
ଜୀବନସର୍ବସ୍ୱ ହୋଇଥାନ୍ତା, କହିଁ
ଢାଳିଥାନ୍ତା ଏବା ପାଦ ?
ଅନ୍ତଃପୁର ଯାଉଁ ପଥେ ଉଭା ହୋଇ
ଅପୂର୍ବ ଏକ ସୁନ୍ଦରୀ
'ଆସ କନ୍ୟେ, ଆସ ମୋ' ପୁରକୁ' ବୋଲି
ନେଲା ତାଙ୍କ କର ଧରି ।
ଏ କି ଏ କି ବୋଲି ବୋଲି ପୁଚ୍ଛିଲେ
ଜାଣି ନ ପାରିଲେ ଆଉ,

## ପଞ୍ଚମ ସର୍ଗ ।

କେଉଁ ଦଗେ ଯେନ  ଗଲୁ ସେ ରମଣୀ,
ଆସିଥିଲୁ ଅବା କାହିଁ ।
ତାମା ନବୁଦେଶ  ତାରତା ଜାଣିଲେ
ପୁରୋଧା ମୁଖୁଁ ନରେଶ,
ଜାଣି ନ ପାରିଲେ  - ବଦନ୍ତୁ ଗୁଣ୍ୟ —
ପୁଷ୍ପେ କୀଠ ପରବେଶ ।
ମନ ଯାର ଶୁଭ  ଗନ୍ଧରେ ତା ଶୁଭ
ଉକ୍ତ କହଇଏ ଧର୍ମ,
ଶକୁନ୍ତଳା ଯହିଁ  ରହିଲା ସେ ପୁର
ଦୁଃଖ-ବହ୍ନିଙ୍କର ବର୍ମ ।



# ଷଷ୍ଠ ସର୍ଗ ।



## ପ୍ରଣୟ-ଫଳ ।



ଶିଶିର-ସଦନେ ଜନ୍ମିଲା ନନ୍ଦନ
ମନୋହର ରୂପବନ୍ତ,
ତା ଦେଖି ଶିଶିର ଆନନ୍ଦେ ଅଧୀର
ହେଲା ଯେସନେ ଉନମତ୍ତ ।

ଫୁଲ୍ଲ-ଉର୍ଣ୍ଣ-ବାସ ବାନ୍ଧି ବାନ୍ଧି ଦେଲା
ପେଣ୍ଡି ସକଳକୁ ଦାନ,
ସୁପକ୍ୱ ଗୋଧୂମ— ଗୁଣି ଦାନେ କଲା
ଦାବ ଭେକ ସମାଧାନ ।

ଇକ୍ଷୁ-ଦଣ୍ଡ-ମାନ ଖଣ୍ଡ ଖଣ୍ଡ କରି
କ୍ଷେପିଲା କେଦାର-ଗର୍ଭେ,
କୁସୁମ-କୁସୁମ— ରଞ୍ଜିତ କପଳ
ପାଇଲେ ରବିକ ଏବେ ।

## ଷଷ୍ଠ ସର୍ଗ ।

ଧୀରେ ଧୀରେ ଦେଲା ତୁଷାରରଞ୍ଜିତ
ମଧୁମୟ ଶୁଭ ପଣ,
ଆତପ-ତାପିତ ଜୀବନ ବଞ୍ଚାଇଲା
ଲକ୍ଷ ଲକ୍ଷ ଆତପତ୍ର ।

ଗଗନଗୃହଙ୍କେ ଦେବାପାଇଁ ପଣ
ନେଲା ଚନ୍ଦ୍ର-ପବମାନ,
କରି ନେଲା ପଥ ଧୂଳି-ବିରଚିତ
ଭଙ୍ଗି-ଶମ୍ଭୁ-ସୋପାନ ।

ନବାପିତ ପଦ୍ମ- ସବୁକୁ ଅଣିଲା
ହୃଦେ ଖୋଲି ହସ୍ତାଯୁକ୍ତ,
ଶୀତବନ୍ଦୀକୃତ ଦ୍ରୁମଲତାଙ୍କୁ କଲା
କୁଜ୍‌ଝଟିକା-କାରାମୁକ୍ତ ।

ସୃଜି କେଶୁଅଲା ସୁଦୀର୍ଘ ସମୟ
ହସନ୍ତୀ ବଦନ ଦଣ୍ଡ,
କ୍ଷମା କରି ତାକୁ ପୁରସ୍କାର ଦେଲା
ଚନ୍ଦ୍ରିକା-ପୀୟୂଷ-ଖଣ୍ଡ ।

ଧରଣୀବାମାରେ ଛୁଟି ଛୁଟି ନେଲେ
ପାବନ-ପାଟଳ-ପାଟ,
ତାର-ଜ୍ୟୋତି-ଲେଖା ଜ୍ୟୋତିଷ-ମଣ୍ଡଳ
ଜୁରି କଲେ ଜ୍ୟୋତି-ହାଟ ।

## ପୁଣ୍ୟ-ବସନ୍ତ ।

ସୁନାସୀ ଗର୍ଜ୍ଜୁର ରତ୍ନରେ ସ୍ୱବର୍ଣ୍ଣ-
'ଦ୍ୱାର ସଂଗଠନେ ବ୍ୟସ୍ତ,
ଚନ୍ଦ୍ରାତପପାଇଁ ଶାଳ୍ମଳୀଏ ହେଲେ
ଅଦ୍ୱୋଷ୍ଣକ ପୂତ-ହସ୍ତ ।

ପଣ ପାଇ ବନ ନଗର ଉଦ୍ୟାନ
ଜନପଦୁଁ ତରୁ ଲତା
ଶିଶିର-ମନ୍ଦରେ ଉପଗତ ହେଲେ
ହୃଦେ ଭର ପ୍ରଫୁଲ୍ଲତା ।

କଣ୍ଟାଳ ରସାଳ ଶାଳ ପଦ୍ଧତରେ
ପଳାସ-ପାଦପଗଣ
ସଂହତବଳରେ ତରୁସଙ୍ଘ ମଧ୍ୟେ
ଦେଖାଇଲେ ବଡ଼ପଣ ।

ତାଙ୍କ ପଛେ ପଛେ ମଧୂକ ଶିରୀଷ
କାଞ୍ଚନ କୁରୁବକଶ୍ରେଣୀ
ଉଭା ହୋଇଗଲେ ଶବବାନ୍ଧୁରୂପ
ବଦନ ଭୂଷଣ ସେନା ।

ଶୁଭ୍ର ପରଛଦେ ଅଭ୍ର ଚମକାଇଁ
ବମ୍ଭେ ନମ୍ର ମଲ୍ଲୀବୃନ୍ଦ
ତରୁ-ସମ୍ମିଳନୀ- ମଣ୍ଡପେ ବସିଲ
ଭେଦ ଭଵ ତରୁ-ବୃନ୍ଦ ।

ଶରତ ସ୍ୱରୂପେ   କନ୍ଦର୍ପ ସ୍ୱରୂପେ
ଯାଜ ଦର୍ପ ବିଭୂଷଣେ
ମାଧବୀ ନଆଳୀ   ମଞ୍ଚୀ ନେଇଥିଲା
ଚମ୍ପକ ମଧ୍ୟ ପ୍ରାଙ୍ଗଣେ ।

ସେବାପାଇଁ ଭଡ   ଥିଲେ ମଞ୍ଜୁଆଷ
କଣ୍ଟକାର କୁରୁବକ,
ବକୁଳ ବକମ   କର୍ଣ୍ଣେ ଶିରେ ସେନ୍ନ
ମଞ୍ଜୁଳ-ପୁଷ୍ପ-ସ୍ତବକ ।

ଆସିଲେ ସୁମନ   ଦଳ ଦଳ ହୋଇ
ଆସିଲେ ଦ୍ୱିଜ-ମଣ୍ଡଳ,
ସ୍ୱଦେଶୀ ବିଦେଶୀ   ଶୋଭା ସମ୍ଭାରରେ
ମଣ୍ଡିଦେଲେ ସଭାସ୍ଥଳ ।

ଅଗସ୍ତ୍ୟଙ୍କ ଶୁଭ-   ଆଶିଷ-ବାର୍ତ୍ତା
ସମୀର ଆଣିଲା ବହୁ,
ମଳୟ-ଭୂଧର-   ଚନ୍ଦନ-ସୌରଭ-
ଲେପେ ତହିଁ ଯଣେ ବହୁ ।

ଶଙ୍ଖ ବଜାଇଲା   ମଧୁପ ମଧୁରେ
ନାମକରଣ ଉତ୍ସବେ,
ନବ ନନ୍ଦନର   "ବସନ୍ତ" ନାମରେ
ଏକମତ ହେଲେ ସର୍ବେ ।

ମଧୁ ଭୋଜ ହେଲା          ପରଷିଲେ ପୁଷ୍ପ-
ବୃନ୍ଦେ ସୁମନ-ଦଳ,
ଲୁଟି କରୁଥିଲା          ମଧୁପ ଶଣ୍ଢୁଆ
ଲଗାଇ କୌଶଳ ଛଳ ।
ଦ୍ୱିଜଗଣ ମଧୁ          ସହିତ ଭକ୍ଷଣ
କରୁଥାନ୍ତି ମଧୁଦଣ୍ଡ,
ମହୀରୁହଗଣ          ସ୍ତମ୍ଭୀଭୂତ ହୋଇ
ରହିଲେ ଗୃହାଁ ସେ କାଣ୍ଡ ।

ସୁଦୂର ଅଗତ          କୋକିଳ ମଧୁରେ
କଲା ଶୁଭ ଆଶୀର୍ବାଦ,
ଦ୍ୱିଜଗଣ ତାହା          ସମର୍ଥନ କଲେ
ଉଚ୍ଚାରି 'ତଥାସ୍ତୁ' ନାଦ ।

ଏବେ ବୃଦ୍ଧ ହେଲା          ଶିଶିର ଶରୀର
ହୋଇଗଲା ବଳହୀନ,
ଶଶି-କଳା-ମତ          ବଢ଼ିଲା ବସନ୍ତ
କରମେ ହେଲା ପ୍ରବୀଣ ।
ପୁତ୍ରେ ରାଜ୍ୟ ଦେଇ          ଶିଶିର ପର୍ବତ-
ତଳେ ଯାଇ କଲା ବାସ,
ତନୁ ତ୍ୟାଗ କଲା          ଘୋର ତପେ ଗୃହ-
ଦରେ ଜାଳ ଅଣ୍ଡ୍ୱାସ ॥

ଜନ୍ମଥିଲା ବୋଲି          ମରଣ ଲଭିଲା,
ଜନମିବ ସେହୁ ପୁଣି,
ଦେଲା ଯାହା ଯାହା          ଜନ୍ମାନ୍ତରେ ତାହା
ଭଣ୍ଡାରେ ରହିବ ଭରି ।

ବସନ୍ତ-ମାଧୁରୀ          ଦର୍ଶନ ମାନସେ
ଦୁଷ୍ମନ୍ତ ନୃପତି ଦିନେ
ଏକାକୀ ଭ୍ରମଣ          କରୁଥିଲେ ଯାଇ
ତଟିନୀ-ତଟ-ଉପବନେ ।

ଶ୍ରବଣେ ତାଙ୍କର          ପ୍ରବେଶିଲା ଏକ
ରମଣୀ-କଣ୍ଠର ଗାନ,
ଜଳଧର ନାଦେ          ଶିଖୀ ପରାଏ
ପୁଲକି ଉଠିଲା ପ୍ରାଣ ।

ସ୍ୱର ଲକ୍ଷ୍ୟ କରି          ଲୁଚି ଉପଗତ
ହେଲେ ଗାନ ସନ୍ନିଧାନେ,
ମୁହୂର୍ତ୍ତେ ଶ୍ରବଣ          କଲେ ସେ ମଧୁର
ଗୀତ ଶ୍ରୁତି-ପ୍ରଣିଧାନେ ।

ଯେତେକ ଶୁଣିଲେ          ତେତେକ ନୃପଙ୍କ
ଜୀବନ ହେଲା ବ୍ୟାକୁଳ,
ଦୁଃଖ ସାଗର-          ମଧ୍ୟେ ପଶି ଯେତେ
ଖୋଜି ପାଉ ନାହିଁ କୂଳ ।

ଦେଖିଲେ ନରେନ୍ଦ୍ର,  ତାଙ୍କ ଏକ ଅଙ୍କେ
ଶିଶୁଟିଏ ଧରି କୋଳେ,
ତରୁଣୀ ଏ ବନ  ପୁଲକାଞ୍ଚିତ ଅଙ୍ଗ
ସଙ୍ଗୀତସ୍ୱର-ହିଲ୍ଲୋଳେ ।

ଗୀତେ କହିଲା, "ଅଯି  ନବ-ବିକସିତ
ନଳିନୀର ପରିହର,
ବଣ ଭିନ୍ନେ ଭିନ୍ନେ  ଭ୍ରମି ମରୁଥାଏ
କେଉଁ ସୁଖ ଆଶା କରି ?"

ପୁରୁଷ ଗୋଟିଏ  ଆସିଲା ସେଠାକୁ
ନାନାବିଧ ଫୁଲ ଧରି,
ତାଙ୍କୁ ଦେଖି ଶିଶୁ  ହରଷେ ଉଠିଲା
ମାତାକୋଳ ତ୍ୟାଗ କରି ।

'ବାବା ବାବା' ବୋଲି  ବାଳକ ପୁରୁଷ-
ଲକ୍ଷେ କଲା ଅନ୍ୱେଷଣ,
ପୁରୁଷହିଁ ତାଙ୍କୁ  ସାଦରେ ଧରିଲା
କରି କର ପ୍ରସାରଣ ।

ରୂପ-ସମ୍ପଦରେ  ଗୃହଙ୍କର ତେଣୁ
କାହାକୁ ନ ଥିଲେ ନ୍ୟୂନ,
ଗୃହଜନଙ୍କର  ଆଦରରେ ଶୋଭା
ହୋଇଗଲା ଚତୁର୍ଗୁଣ ।

ଗୃହଜ ନର୍ମ୍ମରେ          ଅକସ୍ମାତ ଗୂଢ଼-
ମେଘ-ସମ୍ମିଳତ ନଭେ,
ପ୍ରାସ୍ୟେ ନୃପତିଙ୍କ          ହୃଦେ ଉତକଣ୍ଠା
ଜନମାଇ ଦେଲେ ଲବେ ।
ଶାର୍ଦ୍ଦୂଳର ଗନ୍ଧ          ପାଇଲେ ଯେପର
ହୁଅନ୍ତି ହରିଣ-ଦଳ,
ତଥତେ ରୌଦ୍ରଗ          ଗର୍ଜ୍ଜିଲେ ସେମାନେ
ହୃଦୟ କରି ଚଞ୍ଚଳ ।
ଗୃହୁଁ ଗୃହୁଁ ପଶି          କାନରେ ନୃପଙ୍କ
ନୟନୁ ହେଲେ ଅନ୍ତର,
ନାଚ ନାଚ ତାଙ୍କ          ଶୋଭା ନରେଶଙ୍କ
କମ୍ପିତ କଲା ଅନ୍ତର ।
ନୃପ-କେବେ ନଭ          ନୀରସ ଦିଶିଲା,
ନୀରସ ଦିଶିଲା ମନ୍ତ୍ରୀ,
ରିପୁ-ଲକ୍ଷ୍ମୀ-ହୃଦେ          ଲେଉଟି ଅସିଲେ
ପଥେ ଧୀରେ ରଦ୍ଧ ରଥ ।
ରାଜ-ପଣ, ରାଜ-          ସମ୍ପଦ ସକଳ
ପ୍ରଭାତ ହେଲା ନୀରସ,
ନୀରସ ଲାଗିଲା          ମଧୁମୟ ମଧୁ-
ମାସର ଛବି ଦବଯ ।

କେଉଁ ସ୍ୱରେ ଇଚ୍ଛା          ତନ୍ତ୍ରୀର ବିବଶା
ମୂର୍ଚ୍ଛନା ତାଙ୍କ ହେଲା ନାହିଁ,
ଯେଉଁ ସ୍ୱରେ ଚନ୍ଦ୍ରା          ପଶଇ କେଉଁଟି
ଅଧେ ତା ଲୁଣ୍ଠିତା ରହି ।

ଦୁର୍ବାସାଙ୍କ ଶାପ—          ବଳେ ନୃପ-ହୃଦେ
ଶକୁନ୍ତଳାର ପ୍ରଣୟ
ପିଞ୍ଜର-କବଳ-          କ୍ଷୁଧିତ—ଶାର୍ଦ୍ଦୂଳ
ପରାଏ ହେଲା ଅଜେୟ ।

ବସିଥାନ୍ତି ରାଜା          ଦରବାର-ମଣ୍ଡପେ
ନଗରରକ୍ଷକ ଆସି
ମୁଦ୍ରିକା ଗୋଟିଏ          ନୃପ ହସ୍ତେ ଦେଲା
ପ୍ରଣମି ଏମନ୍ତ ଭାଷି,

"ମହାରାଜ ଆଜ          ନଗର ଭ୍ରମଣ
ସମୟରେ ଅଦ୍ଭୁତ
ଏହି ମୁଦ୍ରିକାର          ସହିତ ଧୀବର
ଜଣେ ହୋଇଅଛି ଧୃତ ।

ଧୀବର କହେ, ସେ          ମାଛ ମାରୁଥିଲା
ଶଚୀ-ତୀର୍ଥ-ଜଳେ କାଲେ,
ମୁଦ୍ରିକା ପାଇଲା          ଗର୍ଭେ ତାକୁ ଖଣ୍ଡ-
ଖଣ୍ଡ କରିବାର କାଲେ ।

ମୁଦ୍ରିକା ଅଶେଷ ଗର୍ବ କରୁଅଛି
ସେ କଥାକୁ ସମର୍ଥି,"
ମୁଦ୍ରିକାରେ ହୋଇ- ଅଛି ଗମ୍ଭୀର
ନାମ ଅକ୍ଷର ଖୋଦିତ ।"

"ସତ କି ହେ" ବୋଲି ନରେଶ ନିଅନ୍ତେ
ମୁଦ୍ରିକାର ପରିଚୟ
ଫିଟିଗଲା ମୃତ— କପାଟ, ଦିଶିଲା
ଶକୁନ୍ତଳା-ପରିଣୟ ।

ଜାଣିଲେ ଅନ୍ତରେ ଅକ୍ଷରେ ସତ୍ୟ ଯା
ଲେଖିଥିଲେ କଣ୍ୱ ମୁନି,
ବିସ୍ମୃତି ବିଷାଦେ ଘୋଟିଲେ ରହିଗଲେ
ରାଜା ହୋଇ କ୍ଷଣେ ତୁନି ।

ବିସ୍ମୃତ ଘଟଣା ବୋଲି କେତେ କେତେ
ଚିନ୍ତା କଲେ ମନେ ମନେ,
ପଶିବାରେ କିନ୍ତୁ ସମର୍ଥ ନ ହେଲେ
ନିବିଡ଼ ରହସ୍ୟ-ବନେ ।

ନୃପ ଆଦେଶରେ ଧୀବର ସତ୍ୱର
ସମକ୍ଷକୁ ହୋଇ ନୀତ
କମ୍ପି କଲେବରେ ବିଚଳିତ ସ୍ୱରେ
କହିଲା ହୋଇ ବିନୀତ ।

"ମହାରାଜ ଧର୍ମ— ଅବତାର, ଜଣେ
ଧୀବର ମୁଁ, ନୁହେଁ ଚୋର,"
ନରେଶ ବୋଇଲେ, "ଜାତି ପରିଚୟେ
ଆବଶ୍ୟକ ନାହିଁ ମୋର ।"

ଧୀବର— "ଧର୍ମପ୍ରଭୋ, ମାଛ ମାରି ଆଣିଥିଲି,
ବୋଝ ବୁଝି ଏଣ ଦଣ୍ଡ,"
ରାଜା— "ମାଛ ମାରିବାର ବ୍ୟବସ୍ଥ ବର୍ଜନ
କରିବାର ସବୁ ପଣ୍ଡ ।"

ଧୀବର— "ମହାରାଜ, ମୁହିଁ ଜଣେ କର୍ମ କରେ
ପୋଷେଁ ବନ୍ଧୁ ପରିବାର ।"
ରାଜା— "ଧୀବର ତୁମ୍ଭର ବୃଥା ମାଗ ଏବେ
କୃତଜ୍ଞତା କରିବାର ।"

"କ୍ଷମା କର" ବୋଲି ଧୀବର ପଡ଼ିଲା
ନୃପତି ଚରଣତଳେ,
ଭୂମି ଭିଜିଗଲା ଶରୀର-ଘର୍ମରେ
ନୟନ-ନିଃସୃତ-ଜଳେ ।
କୋଷାଧ୍ୟକ୍ଷେ ଚାହିଁ ନରେଶ ବୋଇଲେ,
"ଶତ ସ୍ୱର୍ଣ୍ଣମୁଦ୍ରା ଆଣ,"
ଶୁଣି ଧୀବରର ସାହସ ବଢ଼ିଲା,
ଫେରିଗଲା ପୁଣି ପ୍ରାଣ ।

ଭୁଲିଲେ ନୃପାଳ ଲୁଗାଇ ଧୀବର
ହୋଇଥିଲା ଦଣ୍ଡବତ,
ଭୁଞ୍ଜିଲେ ସେ ଆଜ୍ଞା ଅର୍ଥଦଣ୍ଡ ତାଙ୍କୁ
ହେଲା ସ୍ୱର୍ଣ୍ଣମୁଦ୍ରା ଶତ ।

ଭୀତ ମାନବଙ୍କୁ ଦୁରନ୍ତ ଅନ୍ତର
ବୋଧ ହୋଇଥାଏ ସଦା,
ବନସିନ୍ଧୁ-ଧ୍ୱନି ପ୍ରେତ-ବାଣୀରୂପେ
ଶୁଏ ତା ଚମକାଇବା ।

କାନ୍ଦ ଜଡ଼ସ୍ୱରେ ଧୀବର କହିଲା,
“ମହାରାଜଙ୍କ ଶାହୁ, ଶାହୁ,
ଶତ ସ୍ୱର୍ଣ୍ଣ-ମୁଦ୍ରା ସତୃର ପୁରୁଷେ
କେହି ମୋର ଦେଖି ନାହିଁ ।

ନ ବୁଝି ପାନଙ୍କୁ ଦଣ୍ଡ ଦେବାପାଇଁ
ଯଦ୍ୟପି କଲେ କାତର,
ସଦୟ ହୃଦୟେ ଆଜ୍ଞା ହେଲା ମୋତେ
ଯିବାପାଇଁ କାରାଗାର ।”

କୋଷାଧ୍ୟକ୍ଷ ଶତ- ସ୍ୱର୍ଣ୍ଣ-ମୁଦ୍ରା ସେନି
ଉପଗତ ନୃପ ପାଶେ,
ଧୀବରଙ୍କୁ ନୃପ ବୋଇଲେ, “ଏ ମୁଦ୍ରା
ପୁରସ୍କାରେ ନିଅ ଦାସେ ।”

ଆହ୍ଲୋଷିତ ବା ପାର୍ଶ୍ୱବାସିକ ଜା
କେହି ନ ପାରିଲେ ବୁଝି,
ଉଠି ନମ୍ରମୁଖେ କହିଲା ଧୀବର
ମୁଦ୍ରା ଗୃହିଁ ନେଇ ବୁଝ ।

ଅତୁଳ ବୋଇଲା, "ଆମ୍ଭ ମୁଦ୍ରିକା
ଥିବାର ନ ଥିଲି ଜାଣି,
ନରବର ଦାସ କେମନ୍ତେ ଜାଣନ୍ତି,
ନବୁ ଦେଇଥାନ୍ତି ଆଣି ।

ଆମ୍ଭ ମୁଦ୍ରିକା ଆମ୍ଭ ଦେଖି ମୋତେ
ଅଙ୍ଗୀ ହୃଦରେ ଲେଖିବ ଧର,
ବଦ୍ଧା ଯକ୍ଷ ହୁଏ ତାମ୍ର ମୁଦ୍ରା ଲକ୍ଷ
ବଗୃହ ପ୍ରଦାନ କର ।"

ରାଜାଦେଶ ମତେ ନଗରରକ୍ଷକ
ସ୍ୱର୍ଣ୍ଣ-ମୁଦ୍ରା ସବୁ ଧରି
ଦେଲେ କୈବର୍ତ୍ତର ବନ୍ଧାଙ୍ଗୁଳି ମୁକ୍ତ
କରି ତହିଁ ଦେଲା ଦର ।

"ଯାଅ ଯାଅ" ବୋଲି କହିଲେ ନରେଶ,
ଚଳିଲା ଧୀବରବର,
କଛୁ କଛୁ ଦୂରେ ପଛକୁ ଫେରାଇ
ଅନାଇ ଥରକୁଥର ।

## ଷଷ୍ଠ ସର୍ଗ ।

ଅଙ୍ଗୁରୀୟ ପାଇ          ନରେନ୍ଦ୍ର ରହିଲେ
ଜୀବନେ ଲଭିଲା କ୍ଲେଶ,
ରାଜ୍ୟ-କାର୍ଯ୍ୟେ ଅବା          ଆମୋଦେ ପ୍ରମୋଦେ
ମନ ନ ଲାଗିଲା ଲେଶ ।

ଯଦି ଥିଲେ ତହିଁ          ଶୁଣନ୍ତି ଯେସନେ
ଜଗତ କରୁଛି ଗାନ,
ପତିଧର୍ମିଣୀଙ୍କି          ଦୁଷ୍ମନ୍ତ ନରେଶ
ଦେଲେ ଘୋର ଅପମାନ ।

ରାଜସିଂହାସନେ          ବସିଲେ ଯେସନେ
କହେ ରାଜସିଂହାସନ,
ପତିଧର୍ମିଣୀକି          ଅଦୋଷେ ତେଜିଲ
ତୁମ୍ଭେ କି ମୋର ଭଜନ ?

ଘରେ ଥିଲେ ଯେଣେ          ଘର କହେ, ତୁମ୍ଭେ
ଘରକୁ କରିଛ ପର;
ଉଦ୍ୟାନକୁ ଗଲେ          ଦିଶନ୍ତି ପାଦପେ
ଗାଢ଼-କ୍ରୋଧ-ଥରଥର ।

ନଗରେ ଭ୍ରମିଲେ          ଦେଖନ୍ତି, ପ୍ରଜାଏ
କହୁଛନ୍ତି ପରସ୍ପରେ,
ଜନାପବାଦେ ଅବା          ସୁନ୍ଦରୀ ପତ୍ନୀକି
ସୀତା ନ ରଖିଲେ ଘରେ ।

ରଜନୀରେ, କହେ ଚକ୍ରବାକୀ ଦୁଃଖେ
କାନ୍ଦି କାନ୍ଦି ହୋଇ କ୍ଲାନ୍ତ,
ଦୁଷ୍ମନ୍ତ ନୃପଙ୍କ ମତ କଲେ ମୋତେ
ଛାଡ଼ି ଦେବେ କି ମୋ କାନ୍ତ ?

ନିଶାନ୍ତେ ଶୁଣନ୍ତି, ଦୁଷ୍ମନ୍ତଙ୍କ ଦୋଷ
ଗାଉଛନ୍ତି ବନ୍ଦୀଜନପାଳ,
ସ୍ଵପ୍ନରେ ଦେଖନ୍ତି, ପୁଷ୍ପେ ଭୃଙ୍ଗ କହେ
ଦୁଷ୍ମନ୍ତ ବିଶ୍ଵାସଘାତୀ ।

ଗଗନେ ବିହଙ୍ଗ- ଦଳ କହୁଛନ୍ତି,
ପୂର୍ବକଥେ ହୋଇ ଭ୍ରାନ୍ତ,
ଦୁଷ୍ମନ୍ତ ନୃପତି ଧର୍ମପତ୍ନୀ ତେଜି
କଲେ ଅତି ନୀଚକର୍ମ ।

ସରେ ହଂସଦଳ କହୁଛନ୍ତି ବସି
ଛାଡ଼ି କର କଳକଳ,
ବଧ ଶସ୍ତ୍ର ଛାଡ଼େ ସାଧ କଲେ ରାଜା
ଘୋର ବଣ ତଳାତଳ ।

ଏରୂପେ ଦୁର୍ଲଭ- ଶବ୍ଦ ଭ୍ରମରେ
ଭାବିଲେ ରାଜା ଦୁଷ୍ମନ୍ତ,
"ପ୍ରିୟ ବଲ୍ଲଭାକୁ ପରିହରି ମୁହିଁ
ହେଲି ବଡ଼ ଦୋଷବନ୍ତ ।

ଷଷ୍ଠ ସର୍ଗ

ମହର୍ଷିଙ୍କ ମଧୁ-                ମନ୍ତ୍ର-ପୂତ ପିତା
ମଣ୍ଡଳ ବାତୁଳ ପ୍ରାୟ,
ହୃତ-ବୁଦ୍ଧି ହେଲ                ହତ-ବୁଦ୍ଧି ହେଲ
ଏବେ ଅଛି କି ଉପାୟ ?

କଣ ବୋଲୁଥିବେ                , ମହର୍ଷି, କୁଶ ବା
ମିଥ୍ୟା ବୋଲୁଥିବ ମନେ,
କେଉଁ ଧର୍ମବଳେ                ଦଣ୍ଡିବ ଆଉ ମୁଁ
କପଟୀ ଲମ୍ପଟ ଜନେ ?

ଯେଉଁ ରାଜା ଯେଉଁ                ଦୋଷେ ଲିପ୍ତ ଥାଇ
ପରକୁ ଦଣ୍ଡେ ସେ ଦୋଷେ,
ଧର୍ମରାଜ ତାକୁ                ତହୁଁ ଶତ-ଗୁଣ
ଦଣ୍ଡ ଦେଇଥାନ୍ତି ରୋଷେ ।

କେଉଁ ଗୁଣ ପାଇଁ                ମୋ ପ୍ରତି ରହିବ
ରାଜଲକ୍ଷ୍ମୀଙ୍କର ପ୍ରୀତି,
ମିଥ୍ୟା ପ୍ରବଞ୍ଚନା                ନସିବେ ଲାଞ୍ଛନା
ଦେଶଠାରେ ରାଜନୀତି ।

କେଉଁ ଭୂତ ଏବେ                ଭ୍ରମ ଜନ୍ମାଇଲା
ମସ୍ତକରେ ମୋର ବସି,
ଭୁଜ ବନ୍ଧୁଙ୍କୁ                ଭୁଜଙ୍ଗ ମଣିଲି,
ଲକ୍ଷ୍ମୀକୁ ଭଲି ରାକ୍ଷସୀ ।

## ଛନ୍ଦେ-କାଙ୍ଗ ।

ଆଜ୍ଞ ଲଭିବ କି ହିଂସ୍ର ବନ୍ଧୁଭାବ
ଦୁଃଖୀ ହେଲ ଦେଇ ଦୁଃଖ,
ବନେ ତପୋବନେ ଲୋଡ଼ ବା ଲଭନ୍ତୁ
କେଉଁ ଦେଖାଇବ ମୁଖ !

ହରୀ ଭକ୍ତ ଶୁଣି କପ କହୁଥିବେ
ଅନନ୍ତସ୍ତା ତ୍ରିସ୍ଥମ୍ଭଦା,
ବଳ ଦେଖାଇଲ ବିଶ୍ୱ କୁସୁମେ
ପ୍ରହାର ଦାରୁଣ ଗଦା ।

ତାଙ୍କ ଅମାୟିକ ହୃଦ-ଉଦ୍ୟାନେ ମୁଁ
ଲଗାଇଲି ଘାସ୍ୟାନଳ,
ତାଙ୍କୁ ଦଗ୍ଧ କରି ଦଗଧ ହେଉଛି
ଯନ୍ତ୍ରଣା ବଡ଼ ପ୍ରବଳ ।

କି ଘରେଁ ଏ ଦେହେ ହେଉଅଛି ଦଗ୍ଧ-
ମାତୃ-ପକ୍ଷୀ ପ୍ରାୟ ଚତ୍ତ,
ଧର୍ମଶାସ୍ତ୍ର ହେବ କୁଣ୍ଠିତ କହିବେ
ଏ ପାପର ପ୍ରାୟଶ୍ଚିତ୍ତ ।

ନଜ କରେ ଅଙ୍କି ପ୍ରିୟାର ମୂରତି
ଶୋଭିତ କରନ୍ତି ଘର,
କେମନ୍ତେ ଚାହିଁବ, ଢ଼ଙ୍କ ପ୍ରଣୁ ସେ
ମୁଖ ଚାହି ଏ ଦ୍ୟାପ୍ତର !

ଲଜ୍ଜାବଶେ ମୋର          ନହନ୍ତି ସୁଯଶ
ଯେ କାଳେ ହୁଏ ଅନ୍ତର,
ବୋଲୁଥିଲି, "ସଖି,          କଦାପି କରକ
ନ ପାରିବୁ ମୋ' ଅନ୍ତର।

ଦିବା ଅବସାନେ          ଛାୟା ଯେବେ କରେ
ଦୂରକୁ ଦୂରକୁ ଗତି,
ପ୍ରେମପରବଶେ          ମୂଳେ ତାକୁ ଧରି
ରଖିଥାଏ ବନସ୍ପତି।

ସୁକୁମାରି, ତୋର          ଶରୀର କୋମଳ
ଶିରୀଷ କୁସୁମ ପରି,
ତା ହନ୍ତ ପରଏ          ହୃଦୟକୁ ତୋର
ଦେଉଛୁ କଠିନ କରି।"

ଏବେ ନଜେ ମୁହିଁ          ଦୂର କଲି ତାକୁ
ଶରୀର କରି ପଥର,
ହୃଦୟ ମୋହର          ହୋଇ ଯାଉଅଛି
କୁଳିଶୁଁ କଠିନତର।

ଧୈର୍ଯ୍ୟ ପରିହାର          ଜାତସ୍ତ, ଉତ୍କଣ୍ଠ
ଗନ୍ଧ ପାଇ ମୋର ବନେ
ପାପ ସ୍ପୃଶିବ          ବୋଲି ଭୟେ ପଶୁ
ରହୁ ନ ପାରିଲେ କ୍ଷଣେ।

ଅହା ପୁତ୍ର-ସ୍ନେହ ହେମନ୍ତ ମଧୁର
'ସେ' ଧନ୍ୟ ପୁରୁଷଙ୍କର,
ସ୍ନେହ-ସ୍ନିଗ୍ଧ-ସ୍ୱର ଧାଇଁଲା କୋଳକୁ
ଜଳେ ନ ବଢ଼ାଇଁ କର ।

ପିତା କୋଳେ ପୁତ୍ର ହର୍ଷେ ହସି ହସି
ପରବେଶ କଲେ ବଳେ
ଭଜପୁର ଶୋକ- ସୁଖ-ବୃଷ୍ଟି ଯେତେ
ଥୋଇ ଦେଲ ପାଦତଳେ ।

ଯା କୋଳେ ବାଳକ କ୍ରୀଡ଼ା କରୁଥିଲା
ଜନନୀ ଥିବ ସେ ତାର,
ମାତା କୋଳୁଁ ଯାଇ ଅଳଙ୍କୃତ କଲା
'କ ସୁଖେ କୋଳ ପିତାର ।

ପରଗୁଣ ଭଳେ ଥିଲେ ତାଳରୂପ
ଶିକ୍ଷଣେ ଥିଲ ଅଭ୍ୟସ୍ତ,
ପୁତ୍ରବତ୍ସଳତା ଗୁଣକୁ ହେଁରାଇ
ଦେଇଅଛୁ ମୋର ହସ୍ତ ।

ବସନ୍ତ-ଅମୃତ— ମାଧୁରୀ ପିଇବାଁ-
ପାଇଁ ଧନ୍ୟ-ପରିବାର
ସ୍ୱର୍ଗୁଁ ଆସିଥିଲେ ସ୍ୱର୍ଗଦ୍ୱାର ମଣି
ଜାଣନେ ବହୁବାର ।

ବସନ୍ତ-ମାଧୁରୀ ମୂର୍ତ୍ତିମତୀ ମୋର
ପ୍ରିୟା ବନ-ଅଳଙ୍କାର,
ତାକୁ ହା ଅସ୍ପୃଶ୍ୟ ମଣିଲି ମୋହର
ଜୀବନକୁ ଶତ ଧିକ୍କାର !
ମୋ' ପ୍ରିୟା ମାଧୁରୀ ଶର୍କରା ନିକଟେ
ବସନ୍ତ-ମାଧୁରୀ ତୁଚ୍ଛ,
ଶର୍କରକୁ ଯାହା କର୍କରେ ଗଣିଲି
ମୋ ଠାରୁ କେ ଅଛି ମୂଢ଼ !
ପ୍ରିୟା ସଙ୍ଗ କରି- ଥିଲି ଜଗତର
ଶୋଭାର ଶୋଭା ବର୍ଦ୍ଧନ,
ପ୍ରିୟାର ବିରହ କରୁଛି ସକଳ
ଶୋଭାର ଶୋଭା ମର୍ଦ୍ଦନ ।
ତପୋବନେ ଦେଖି— ଥିଲି ଯେଉଁ ଫୁଲ
ଯେଉଁ ତରୁଲତା ମାନ;
ସଦ୍ୟଃ-ସ୍ୱର୍ଗ-ଚ୍ୟୁତ ପରି ହେଉଥିଲେ
ନେତ୍ରକୁ ପ୍ରତୀୟମାନ ।
ଏବେ ତହିଁ ବନ ଲୋକପ୍ରଶଂସିତ
ଫୁଲ୍ଲ-ଫୁଲ ଲତା ବୃକ୍ଷ
ନୟନକୁ ମୋର ପ୍ରତୀତ ହେଉଛି
କର୍କଶ ମଳିନ ରୂକ୍ଷ ।

ଛିନ୍ନା-ବଲ୍ଲୀ ଥିଲା    ସୁବର୍ଣ୍ଣ-ଶରତ
ସୁରର ମନୋହାରିଣୀ,
ତା ଯୋଗେଁ କାନନ—    ପଲ୍ଲବିତ ଥିଲା
ହୃଦୟ-ପ୍ରୀତି-ଦାୟିନୀ ।

ସ୍ୱଭାବତଃ ଶୁଭ    ଚିର ଯାଗ ସ୍ଥଳ
ଶ୍ରବଣ-ତୋଷଣ-ପନ୍ଥ,
କିନ୍ତୁ ଛିନ୍ନା ବଲ୍ଲୀ    ଯେଣୁ ସ୍ଥଳ ଏବେ
ହେଉଅଛି କର୍ଣ୍ଣକଣ୍ଟ ।

ଛିନ୍ନା ବଲ୍ଲୀରେ ଥାଇ    ଯେଉଁ ଫୁଲ ମୋତେ
ଦେଉଥିଲା ମଧୁଗନ୍ଧ,
ତାହା ବାସ ଏବେ    ନାସାରନ୍ଧ୍ରେ ପଶି
ମନେ ଲଗାଉଛି ଦ୍ୱନ୍ଦ୍ୱ ।

ଛିନ୍ନା-ବଲ୍ଲୀ-ଫଳ    ଭୋଜନ କରି ମୁଁ
ତୃପ୍ତ ମଣୁଥିଲି ସୁଧା,
ମୂଳ-ମୂଳେ ଲତା    ଲଗୁଛି ତା ବିନା
ଜନ୍ମୁଁ ଭଲ ଫଳ ସୁଧା ।

ଛିନ୍ନା-ସଙ୍ଗେ ବସି    ବୁଝିଥିଲି ଏବେ
ପଲ୍ଲବ-ଅପର-ମୂଲ୍ୟ,
ତା ବିନା ଶାଳ୍ମଳୀ—    ତୁଳା-ଶଯ୍ୟା ହେଲା
ଶାଳ୍ମଳୀ-କଣ୍ଟକ ତୁଲ୍ୟ ।

## ଷଷ୍ଠ ସର୍ଗ

ଜଗତର ସୁଖ          ଶୀତ-ଗ୍ରୀଷ୍ମ-ସମ—
ସମ୍ମିଳନେ ପରସ୍ପର,
ଏକର ଅଭାବେ          ଅନ୍ୟ ହୋଇଥାଏ
ଦାରୁଣ ଦୁଃଖର ସର ।
ପ୍ରିୟା ମୋର ଶୀତ,          ଭଲ ଥାଉ ଏବେ
ଜମୁଥିବ ଥରହର,
ଗ୍ରୀଷ୍ମ ହୋଇ ମୁହିଁ          ତା ବିନା ହେଉଛି
ଦହ୍ୟମାନ-କଳେବର ।
ଆଜି ତ ଏ ବସନ୍ତ—          ଜୀବନେ ମିଳନ-
ସୁରଭି ସମସ୍ତ ଆସି
ତା କଷ୍ଟ-ରଜନୀ          ମୋ ତାପ-ଦିବସ-
ଦାରୁଣତା ହେବ ଲାଗି ?
ବିରହୀ ହେମନ୍ତ—          ଦଶବରୀ ହୋଇ
ବର୍ଷୁଥିବ ଅଶ୍ରୁକଣ,
ନୟନ ମୋହର          ତାହ ବରଷୁଛି
ହୋଇ ପ୍ରାବୃଟର ଘନ,
ତା ଶୋକ-ଦୁର୍ଦ୍ଦିନ          ମୋ ଦୁଃଖ-ଦୁର୍ଦ୍ଦିନ—
ପ୍ରାବଲ୍ୟ ହେବ ତ ନାଶ,
ମିଳନ-ଶରତେ          ସୁଚନ୍ଦ୍ର-ଶୋଭିତ
ହେବ ସୁଖ ଜଗାକାଶ ?"

ସଜଳ-ନୟନେ  ଅଙ୍ଗୁରୀୟ ଗ୍ରହି
ମଧୁର ଭର୍ତ୍ସନା କରି
ବୋଇଲେ, "ହା ହତ—  ଭାଗ୍ୟ ଅଙ୍ଗୁରୀୟ
ଥିଲୁ ଗର୍ବରୂପ କରି !
ଯେଉଁ ପୁଣ୍ୟ-ବଳେ  ଥିଲୁ ସୁନ୍ଦରୀର
ସୁନ୍ଦର କର-ପଲ୍ଲବେ,
ସେହୁ ପୁଣ୍ୟ କ୍ଷୟ  ହୋଇ ଯିବା ବେଳୁଁ
ରହି ନ ପାରିଲୁ ଲବେ ।"
ସୁନ୍ଦରୀର ଚିତ୍ତ  ଥିଲା ଯେଉଁ କ୍ଷଣେ
ତହିଁକି କଲା ଗମନ
ଚିତ୍ତ ଧରି କରେ  ଲଗାଇ ବକ୍ଷରେ
ବଦନେ ଦେଲେ ଚୁମ୍ବନ ।
ଚକିତା ସୁନ୍ଦରୀ—  ଭାଲେ ସ୍ୱେଦକଣା
ଦିଶୁଥାଏ ଝଲଝଲ,
ସିକ୍ତ ହୋଇ ତହିଁ  ଲିପ୍ତ ହୋଉଥାଏ
କୁଟିଳ ଚୂର୍ଣ୍ଣକୁନ୍ତଳ ।
ପଲକେ ଅପାଙ୍ଗେ  ଚକ୍ଷୁ-ତାରା ଢଳି
ବକ୍ର ହୋଇଥାଏ ଦୃଷ୍ଟି,
ଯେଉଁ ଦୃଷ୍ଟି ତା'ର  ହୃଦେ କରିଥିଲା
ନବ ପ୍ରେମାଙ୍କୁର ସୃଷ୍ଟି ।

## ଷଷ୍ଠ ସର୍ଗ ।

ପୁନଃ ପୁନଃ ରାଜା         ଅନାଇ ନୃପଙ୍କ
ଦୃଷ୍ଟି ଶକ୍ତି ହେଲା କ୍ଷୀଣ,
ହୃଦୟପଟ୍ଟରେ ହେଲା         ତପୋବନ ସହ
ରାମା ମୂର୍ତ୍ତି ପରକାଶ ।
ସେ ମୂର୍ତ୍ତି ଭିତରେ         ମନ ପଶିଗଲା
ବାହ୍ୟଜ୍ଞାନ ଗଲା ଚଳି,
କାଷ୍ଠମୂର୍ତ୍ତି ପରି         ଅବନୀ ଉପରେ
ନୃପତି ପଡ଼ିଲେ ଢଳି ।
କନ୍ତୁ କ୍ଷଣ ପରେ         ସଂଜ୍ଞା ଲଭି ଉଠି
ଚଉ ଚାହିଁ ପୁନଃ ପୁନଃ,
ଦୁର୍ଲ୍ଲଭ-ପଦାର୍ଥ——         ପ୍ରଣୟ-ଗୌରବ
ବୁଝି କଲେ ଶତଗୁଣ ।
ପ୍ରିୟାସଙ୍ଗ ସୁଖ——         ସ୍ମରି ଦୁଃଖେ ନୃପ
ସମସ୍ତ ଯାପନ କଲେ,
ମନ ଜ୍ଞାନ ଯେନ         ବିବେକ ରହିଲା
ଆଶା-ଲତା-ଛାୟାତଳେ ।
ସୁଖ ଦୁଃଖ ଚିର         ନହନ୍ତି ଜଗତେ
ସଭିଙ୍କର ଅଛି ଜସ୍ତ,
ଆଜ ଯା ବଦନ         ହରଷରେ ପୂର୍ଣ୍ଣ,
କାଲିକୁ ବିଷାଦମୟ ।

ପ୍ରଣୟ-ବଲ୍ଲରୀ ।

ଯାହା ଲାଗି ପ୍ରାଣ ଯୌବନ ପ୍ରସୂନ
ତା ଲାଗି ତେବେ ଝଡ଼ିଲ,
ତେଉର ଉପର ହୋଇଥାଏ ଯାହା
ଯୌବନ ହୁଏ ଶୀତଳ ।
ତେଉର ଊର୍ମିରେ ମନ୍ଥର ଅବଶ
ଯୌବନ ହୁଏ ଉଜ୍ଜ୍ୱଳ,
ଯେମନ୍ତ ମଧୁର ତନ୍ତ୍ରୀଁ ତେମନ୍ତ
ସୁନ୍ଦର ପ୍ରଣୟ-ଫଳ ।



# ସପ୍ତମ ସର୍ଗ ।

## ପ୍ରଣୟ-ଛାୟା ।

ଦିନେ ସିନ୍ଧୁ-କୂଳେ    ନୀଳାଚଳ-ତଳେ
କରୁଥିଲେ ବିଚରଣ
ଶାନ୍ତି, ଶ୍ରଦ୍ଧା, ଦୟା,    କ୍ଷମା, ଭକ୍ତି, ଧୃତି
ଆଦି ଦେବକନ୍ୟାଗଣ ।

ହୋଇଥିଲେ ମତ୍ତ    ମାଧବୀ ନିଆଳୀ
କୁସୁମ ଚୟନେ ରତ,
ଥରେ ପୁଷ୍ପେ ଥରେ    ଡାଳିରେ ତାଙ୍କର
ଭ୍ରମୁଥିଲା ମଧୁବ୍ରତ ।

ମନର ଆନନ୍ଦ    ସହଚରେ ତାହା
କଣ୍ଠରୁ ମଧୁର ଗୀତ
ଉଠି ନିଜ ପ୍ରାଣ    ସହ ସଙ୍ଗିନୀଙ୍କ
କରୁଥାଏ ଉଲ୍ଲସିତ ।

ପ୍ରଣୟ-ବଲ୍ଲରୀ ।

ଚରମେ ତାଙ୍କର ଲମ୍ବି ହୋଇଥାଏ
ଧୂମ-ଶୁଭ୍ର-ଅଗ୍ର-ବେଣୀ,
ବେଣୀ ଅଗ୍ରେ କ୍ରମ— ସ୍ଥୂଳ ହୋଇଥାଏ
ଯୁବକଚ-ମୋହଶ୍ରେଣୀ ।

ଝିନ ବସନରେ କୁମାରୀଙ୍କ ତନୁ-
କାନ୍ତି ହେଉଥାଏ ବାଧ,
ବଦନପ୍ରଭାରେ ଅମୃତାଂଶୁମାନ
ଖେଳୁଥାଏ ଦଗ ଗୃହ ।

କୋକନଦକାନ୍ତି— ପାଦେ ହୋଇଗଲୁ
ବନଭୂମି ଶୋଭନୀୟ,
ସେହୁ ପାଦ ସଦା ଦେବହ୍ରି-ଲୋଲୁପ-
ମୁନି-ମନ-ଲୋଭନୀୟ ।

କର-କମନୀୟ- କାନ୍ତି-ଚୁମ୍ବି ହେଲେ
ନବପଲ୍ଲବଗୁଚ୍ଛ ହୃଷ୍ଟ,
ଫୁଟେ ଫୁଲମାନ କର-କୋଳ ଗଲେ
ତେଜ କରୁ ଲତା ପୁଷ୍ଟ ।

ଖଗ ମୃଗଗଣ ପୁଣ୍ୟ ପ୍ରାପ୍ତେ ତାଙ୍କ
ପାଶେ ଆସି କଲେ ଲୀଳା,
ଏବେ ଗଣ୍ଡୁ ଉସ୍ତାର, ସନ୍ତୁଷ୍ଟେ କେ ଖୁଣ୍ଡି
କ୍ଷୁଧା ତୃଷା ଜଣାଇଲୁ ।

ଏମନ୍ତ ସମୟେ          ଋକ୍ଷ-ରାଜ-ସୁତା
ହଂସା ହେଲା ଉପଗତ,
ବାଜ-ଚଞ୍ଚୁ ପରି          ନଖପଂକ୍ତି ତାର
ଶାର୍ଦ୍ଦୂଳ-ସଦୃଶ ଦନ୍ତ ।

ରକ୍ତ-ଲୋଚନା          ଉଲଙ୍ଗ-ବଦନା
ଉଚ୍ଚାର କର୍କଶ-ଭାଷ
ଦସ୍ୟୁ ସନ୍ନିକଟେ          ଦମ୍ଭେ କଲା ନିଜ
ଅଧିପତ୍ୟ ପରକାଶ ।

ରାକ୍ଷସୀଙ୍କୁ ଦେଖି          ଖଗ ମୃଗଗଣ
ପଳାଇଲେ ଇତସ୍ତତଃ,
କମ୍ପିଲା ପାଦପ—          ବଲ୍ଲରୀ ସହିତ
ବନଭୂମି ହୋଇ ତ୍ରସ୍ତ ।

ଦେବକନ୍ୟା-ଦଳେ          ଡରିବାକୁ କଲା
ଋକ୍ଷ-ରାଜ-ସୁତା ଛଳ,
ଏକମୁଖେ ତାଙ୍କ          ଅନେକ ମୁଖରୁ
ବାକ୍ୟ-ବାଣେ ଗଲା ଜଳି ।

ଦେବକନ୍ୟାଗଣ          କଟୁ-ବାକ୍ୟେ ତାକୁ
କରୁଣ କଲେ ଭର୍ତ୍ସନା,
କେ ବୋଇଲା, "ମୃଗ          ପକ୍ଷୀ ଦରଶନେ
ଲମ୍ଫିପଡ଼େ ତୋ ରଚନା ।"

ସେ ବୋଇଲା, "ପଳା, ଛୁଅଁ ନା ଛୁଅଁ ନା,
ଖାଇ ଖାଉ ଯୋବୁ ଅଛ,"
ସେ ବୋଇଲା, "ତନୁ ସ୍ଥୂଳ କରଅଛୁ
ପିଇ ଦୃଷ୍ଟି-ମାଂସ-ରସ ।"

କୋପେ ରାକ୍ଷସୀର ତନୁ କମ୍ପିଗଲା
ଚଳାଇଲା ନଖ ଦନ୍ତ,
କରଦେଲା ଦେବ- କନ୍ୟକାଗଣର
ଶରୀର କ୍ଷତ ବିକ୍ଷତ ।

ରକ୍ତପ୍ରବାହେ ଦେବକନ୍ୟାଙ୍କର
ତନୁ ହେଲା ଜରଜର,
କ୍ଷମା ପ୍ରବୋଧନେ ସମସ୍ତେ ନିବର୍ତ୍ତି
ଗଲେ ନିଜ ନିଜ ଘର ।

ହଂସୀ ଯାଇ ପିଙ୍ଗା ନିକଟେ କହିଲା
ଦେବକନ୍ୟାଙ୍କର କଥା,
କିଳତେ ତାହାକୁ ଭର୍ତ୍ସନା କହିଲ
ଘୃଣା କରିଥିଲେ ଯଥା ।

ରାକ୍ଷସ ଭୂପତି ଶୁଣିଲା ସେସବୁ
ରକ୍ଷଜାତି ଅପମାନ,
ବିଘୂର୍ଣ୍ଣିତ ହେଲା ନୟନ ତାହାର
ତନ ହେଲା କମ୍ପମାନ ।

## ସପ୍ତମ ସର୍ଗ

ରାଜମନ୍ତ୍ରୀ କ୍ରୋଧ ଗରଜି କହିଲା,
"ଦେବେ ତ ଖାଇଲେ ସୁଧା,
ତଥାପି ଅମୃତ ଭକ୍ଷ୍ୟ କେଇଥାନ୍ତି
ନିବର୍ତ୍ତ ନ କରି କ୍ଷୁଧା ।

ଯଜ୍ଞ ଛଳ କରି ଖାଇ ଯାଉଛନ୍ତି
ଅଶ୍ୱ ବୃଷ ମେଷ ଛାଗ,
ତେବେ ନ ଛାଡ଼ିଲେ ଲୁଟି ନେବାକୁ
ଆମ୍ଭର ଭୋଜନ ଭାଗ ।

ନୀଳାଚଳ-ତଳ- ସିନ୍ଧୁ-କୂଳ ଯାଏଁ
ଗବରେ ବୁଲନ୍ତି କାଲି,
ସେହି ରମ୍ୟ-ବନ ଆମ୍ଭ ଅଧିକାରେ
ରହିଅଛି ଚିରକାଳ ।

ଦେବ-ସୁତାମାନେ ନିର୍ଭୟେ ବୁଲିଲେ
ଆମ୍ଭର ରାଜ୍ୟକୁ ଆସି,
ରାଜ-ନନ୍ଦନୀଙ୍କ ଗାଳି ଦେଲେ ପୁଣି
ବହୁ ଭର୍ତ୍ସନା ଭାଷି ।

ଅଙ୍ଗୁଳି ପ୍ରବେଶେଁ ବାହୁ ପ୍ରବେଶିବ
କରୁଁ ଯେବେ ଅବହେଳା,
କ୍ଷୁଦ୍ର କ୍ଷୁଦ୍ର ପଥେ କାଳ ପଶି ପଶି
ବୁଡ଼ାଇଦେଇଛି ଭେଳା ।

ଯତେକ ଅମୃତ ଉତ୍ପନ୍ନ କର
ନାଁନା ଛଳ କଉଶଳ;
ସତେ କି ଅମୃତ ପାରବେ ତୁମେମାନେ
ଦେଖାଇବୁଁ ଯଦି ବଳ ?”
“ସତ ସତ” ବୋଲି ଉଚ୍ଚ ନାଦ କଲେ
ରାଜ-ସଭାସଦଗଣ,
ଲୋଭ ମଦ ଦ୍ୱେଷ କପଟ ପ୍ରବୃତ୍ତି
ଉଗ୍ର ହୋଇ ଜଣ ଜଣ ।
ଦଳବଳ ସହ ରାକ୍ଷସ ଭୂପତି
ସତ୍ୱର ହୋଇ ବାହାର
ମହା-ଆସ୍ଫାଳନେ ଗର୍ଜି କମ୍ପାଇଲେ
ଅମରାବତୀର ଦ୍ୱାର ।
ଶୁଣି ସୁରପତି ନଗର ଦୁଆରେ
ଅସୁରଙ୍କ ଆକ୍ରମଣ
ପ୍ରଥମେ ପ୍ରେରିଲେ ସେନାମାନଙ୍କ ଦେଇ
ପ୍ରବୀଣ ସୈନିକଗଣ ।
ଶ୍ରେଷ୍ଠ ଥିଲେ ତହିଁ ଉତ୍ସାହ ସାହସ
ଧୈର୍ଯ୍ୟ ବୁଦ୍ଧି ପରାକ୍ରମ,
ଅସୁରଙ୍କ ସହ ଯୁଦ୍ଧେ ପ୍ରବର୍ତ୍ତିଲେ
ପ୍ରକାଶି ଘୋର ବିକ୍ରମ ।

କାମ କ୍ରୋଧ ମଦ          ଆଳସ୍ୟ ବିଳାସ
ଆଦି ଶଂସପ୍ତକଦଳ
ରାକ୍ଷସ ପକ୍ଷରୁ          ଅସି ଗ୍ରାସି ଦେଲେ
ଦେବ-ବାହିନୀର ବଳ ।

ଉତ୍ତାନେ ପଡ଼ି କେ          ଯୋଦ୍ଧା-ବେଳାସ୍ଥଳେ,
କେ ବ୍ରଣ-ପାଦପ-ତଳେ,
କେହୁ ଅର୍ଦ୍ଧ-ମୂର୍ଚ୍ଛ          ପ୍ରାସାଦ ଉଚ୍ଚରେ
ଘୋର ଘର୍ମ ନାଶ କଲେ ।

କାହା ଶିରେ କାହା          ବକ୍ଷେ କା' ମରମେ
କାହା ସର୍ବ ଅବୟବେ
ବାଜିଥିଲା କଣ୍ଟ-          ଦଗ୍ଧ ଶରମାନ
ଭୀଷଣ ରାକ୍ଷସାହବେ ।

ଝଲିଲା ବେଦନା          ତହିଁ ଦେବସେନା-
ଗଣ ହେଲେ କଲବଲ,
ଅର୍ଦ୍ଧ ନିସ୍ପନ୍ଦଙ୍କ          ଚକ୍ଷୁରେ ମଧ୍ୟ
ନ ଦିଶିଲା ଅଶ୍ରୁ ଜଳ ।

ସେନାପତି ଯାଇ          ସୁରେଶେ କହିଲେ
ଦୁର୍ଜ୍ଜୟା ଆସୁରୀ ନୀତି,
ଖଣ୍ଡ ସ୍ମୃତି-ପଥେ          ହୃଦୟେ ପଶିଲା
ଦାରୁଣ ଅସୁର-ଭୀତି ।

## ଦୁଷ୍ମନ୍ତ-ଚରିତ ।

ପୁରୋଧାଙ୍କୁ ଚାହିଁ ମଘବାନ ବୋଇଲେ,
"କହ ଗୁରୋ, ପ୍ରତିକାର,
ନ ହେଲେ ଅସୁର- ଉପଦ୍ରବେ ହେଲା
ସୁର-ପୁର ଛାରଖାର ।

ନୀଳାଚଳ ପ୍ରତି ଯତ୍ନ କରିବାକୁ
କହୁଛନ୍ତି ଦେବ ଋଷି,
ସ୍ୱର୍ଗରୁ ସ୍ୱଚ୍ଛନ୍ଦେ ବଳେ ପଶିଲେଣି,
ମର୍ତ୍ତ୍ୟେ କି ରହିବେ ଋଷି ?

ଜ୍ଞାନ-ଦୃଷ୍ଟିଚକ୍ଷୁ ଲଗାଇ ଗୀଷ୍ପତି
ଚାହିଁଲେ ଧରମ ଗତି,
ବିବୁଧାଧିପଙ୍କୁ କହିଲେ ଧରମ-
ନୀତି-ଫଳ ଶ୍ଳୋକ ପଢ଼ି ।

"ପାର୍ଥିବ-ବନ୍ଧନ ମାୟା-ପ୍ରଲୋଭନ
ମହାପାପ ଦେବତ୍ୱକ,
ବୈଖାନସଙ୍କର ତପୋବର୍ଦ୍ଧ-ତରୁ
ଫଳିତ ହୋଇଛି ଆଜ ।

ପୃଥ୍ୱୀ ତଳ ମଧ୍ୟେ ନାରୀମାନଙ୍କର
ସତୀ ଏକା ପୂଜ୍ୟତମ,
ନ ବୁଝି ଦୁର୍ବାସା ଶକୁନ୍ତଳା ସତୀ
ଶାପ ଦେଲେ ଅନ୍ଧ ତମ ।

ସପ୍ତମ ସର୍ଗ ।

ସେହି ଶାପଫଳେ    ନିର୍ଦ୍ଦୋଷ ଦୁଷ୍ମନ୍ତ
ଭୋଗୁଛନ୍ତି ଘୋର କଷ୍ଟ;
ଧାର୍ମିକ ମାନବ    ଦୁଃଖେ ସୁରପୁଷ୍ଟ
ହୋଇଅଛନ୍ତି ଶିଷ୍ଟଭ୍ରଷ୍ଟ ।
ନରେଶ ଦୁଷ୍ମନ୍ତ    ନୀତି-ଧର୍ମବନ୍ତ
ତାଙ୍କୁ କଲେ ସମାଦର,
ତାଙ୍କ ଧର୍ମନୀତି    ପ୍ରଭାବେ ଅନ୍ତର
ହୋଇଯିବ ରକ୍ଷ-ଦଳ ।
ସେହି ନରପତି    ଅଙ୍ଗେ ଧରନ୍ତି
ବହୁ ଦେବତାଙ୍କ ଗୁଣ,
ଦୈବୀ ଶକତି    ଯୁଦ୍ଧଯୋଗେ ଦାନବ-
ଦଳ ନାଶେ ପୁନପୁଣ ।”
ଶୁଣି ସୁରପତି    ମାତଳିଙ୍କୁ ପ୍ରତି
ସତ୍ୱର ଆଦେଶ କଲେ,
'ଯାଅ ଦୂତ, ରଥ    କର ସଜ୍ଜିତ
ସତ୍ୱର ଅବନୀ ତଳେ ।
ପ୍ରିୟ-ବନ୍ଧୁରୂପେ    ଦୁଷ୍ମନ୍ତ ନୃପଙ୍କୁ
କହ ଆମ୍ଭ ନିମନ୍ତ୍ରଣ
ଅତି ସମାଦରେ    ସ୍ୟନ୍ଦନେ ବସାଇ
ସ୍ୱର୍ଗେ କର ଆନୟନ ।”

ଆଜ୍ଞା ଶିରେ ଧରି ତୂର୍ଣ୍ଣ ପାତ କରି
ଚଳିଲା ସାରଥିବର
ସ୍ୱର୍ଗୀୟ-ରଥନେ ନନ୍ଦନ-ପ୍ରସୂନେ
ରଥ କରି ମନୋହର,
ନରେଶ ସମ୍ମୁଖେ ଉପଗତ ହୋଇ
ସୁରେଶଙ୍କ ନିମନ୍ତ୍ରଣ
ବିନୋଦେ ବିନୋଦ କହିଲା ଯତନେ
କରିବାକୁ ଅବେକ୍ଷଣ ।

ଶ୍ରୁତବନ୍ତ ହୋଇ ପ୍ରଦକ୍ଷିଣ କରି
ନରେଶ ଚଢ଼ିଲେ ରଥେ,
ମାତଲି ଚାଳନେ ବେଗେ ଗଲେ ଅଗ୍ରେ
ସୁରରଥ ସୁରପଥେ ।

ଅମର-ନଗର ପୂର୍ବ ଦ୍ୱାରେ ଯାଇ
ରଥ ହେଲା ଉପଗତ,
ରତ୍ନମୟ-ହୀର- ତୋରଣ ଶୀର୍ଷରେ
ହୋଇଅଛି ଶୋଭାବନ୍ତ !
ରତ୍ନାକର ରତ୍ନ ସକଳ ଯହିଁରେ
ଦିଗବ୍ୟାପୀ ଘନ ପରି
ସତେ ଚନ୍ଦ୍ରା ହୋଇ ନକ୍ଷତ୍ର-ପୁଞ୍ଜରେ
କର ଦେଉଛନ୍ତି ଛଟା ।

ରତ୍ନମୟ ନଭ          ଦେଖିଲେ ମାନବ
ଲୋଭ ରହେ ଅପଂପର୍,
ବିମ୍ବରଭୁ ବୃଷ୍ଟି-          ଜଳ ସବୁ କୂପ
ଗର୍ଭେ କି ପାରଇ ଧର ?
ଗୁଣ ସେନବାର          ଲୋଭେ ପୂର୍ଣ୍ଣ ଥିଲା
ନରପତ୍ନଙ୍କର ହୃଦ,
ସୁର-ଶିଳ୍ପି-ଗୁଣ-          ଦର୍ଶନେ ତା ଗଲା
ଦେହଲେ ନିର୍ମଳ ମୁଦ ।

ପ୍ରଶସ୍ତ ତୋରଣ-          ପଥେ ନୃପ ପୁର—
ପୁରେ କଲ ପ୍ରବେଶ
ଦେଖିଲେ ନଗର—          ନବାଢ଼ିଙ୍କ ରମ୍ୟ
ରୂପ ମନୋହର-ବେଶ ।
ନିର୍ମଳ-ଶରୀର          ଉଜ୍ଜ୍ୱଳ-ଭୂଷଣେ
ମଣ୍ଡି ସୁରବାଳାଗଣ
ପ୍ରସନ୍ନ ବଦନେ          ସଶ୍ରଦ୍ଧ ଲୋଚନେ
ନୃପେ କଲେ ନିରୀକ୍ଷଣ ।
ଏକ ନାରୀ ଏକ          ଉଦ୍ୟାନ ପାଦପ-
ମୂଳେ ଦେଉଥିଲା ଜଳ,
ନନ୍ଦନଙ୍କୁ ଗୁହିଁ          ବସନ୍ତ ବଦନେ
ବୃଷ୍ଟି କରିଦେଲା ଜଳ ।

ନରପତି ପୁନଃ          ପୁନଃ ନିରୀକ୍ଷଣ
କଲେ ସେ ଯୋଷା ଆନନ,
ମନେ ଭଲେ ସେହୁ          ମଣ୍ଡିଥିଲା ପରି
ତଟିନୀ-ତଟ-କାନନ ।

ପୁଣି ଅନାଇଲେ          ଉଦ୍ୟାନେ ଭ୍ରମଣ
କରୁଛନ୍ତି ତା ସହଚରୀ,
ବନେ ଦେଖିଥିଲେ          ଯେଉଁ ଶିଶୁ ସେହୁ
ଶିଶୁଟିକୁ କୋଳେ ଧରି ।

ବନେ ଯେ ଯୁବକ          କୁସୁମ ଆଣିଲା
ସେହୁ ଦେଖୁଛନ୍ତି ଉଦ୍ୟାନ,
ନୃପ ଆଗମନେ          ଅବା ରଥସ୍ୱନେ
ନାହିଁ ତାଙ୍କ କର୍ଣ୍ଣ ଧ୍ୟାନ ।

ମାତଲିଙ୍କି ନୃପ          ପଚାରିଲେ, "ଏହୁ
ଉଦ୍ୟାନର ଗୃହ ଜଣ
ପତିତ ସ୍ୱର୍ଗରେ          ଥାନ୍ତି, ନା ଧର୍ମଯେ
କରନ୍ତି ମର୍ତ୍ତ୍ୟ ଭ୍ରମଣ ?
ଜାଣିବାକୁ ମୁଁ ତ          ଭଜନ ସାରଥି,
ନାମ ତାଙ୍କ କସ କସ,"
ସାରଥି ବୋଇଲା,          "ଶୁଣିବା ବ୍ରହ୍ମକୁ
ହସ୍ତିନା-ମଣ୍ଡଳାଧୀଶ ।

## ସପ୍ତମ ସର୍ଗ

ପୁଂସ ନାମ ପ୍ରେମ,                ଯୋଷା ନାମ ପ୍ରୀତି,
ପୁତ୍ର ତାଙ୍କ ସୁତ ନାମ;
ନିର୍ମଳ-ପବନ                ସ୍ନାନ କଲେ ଲୋକେ
ଯାଇଥାନ୍ତି ମର୍ତ୍ତ୍ୟଧାମ ।

ଯା କୋଳେ ବାଳକ                ରହନ୍ତି ହରଷେ,
ମୈତ୍ରୀ ନାମ ଅଟେ ତାରି,
ଏହାଙ୍କ ଉଦ୍ୟାନ-                ଫଳ ପରପୁଷ୍ଟ
ଘଟଇ ସୁର-ସମ୍ଭାର ।”

ଶୁଣି ନରପତି                ବୁଝିନେଲେ ତାଙ୍କ
ବନେ ହୁନ୍ତୁ ହେବା କଥା,
ସ୍ୱର୍ଗ ଅପି ସ୍ୱର୍ଗ-                ସୁଖରୁ ବଞ୍ଚିତ
ଭାବି ନତ କଲେ ମଥା ।

ସୁରପତି ପାଇ                ନରପତିଙ୍କର
ଆଗମନ ସମାଚାର
କର ଧରି ନେଇ                ଆସନେ ବସାଇ
କଲେ ଦ୍ରବ୍ୟ ସତ୍କାର ।

ବୃତ୍ତାନ୍ତ କହିଲେ                ନିଶାଚରଙ୍କର
ଉପଦ୍ରବ ବିବରଣ,
ଶୁଣି ନରପତି                ଅସୁର ନାଶନେ
ବାହାରିଲେ ତତକ୍ଷଣ ।

ଅମ୍ବର ଉପର ଜଣାଇଲା ତେବେଣ
'ଅମ୍ବର ଭୂପତ୍ତ ପାଶେ,
"ରଘୁରାଜ, ରଣ ସଜାଗେ ଦୁହନ୍ତ
ଅସୁଛନ୍ତି ମହୋଲ୍ଲାସେ ।"
ଅଗ୍ର୍ଯ୍ୟ ବଦନ ଶୁଣି ରଘୁରାଜ
ପଚାରିଲେ ଅଭିମତ,
ଅଗ୍ର୍ଯ୍ୟ ଋଷିର କହିଲେ ତାହାଙ୍କ
ବିଗତ କଥା ସମସ୍ତ ।

"ରଘୁବର, ଯେତେ- ବେଳେ ଦେବଗଣ
ଅସୁରଙ୍କୁ ଥିଲେ ଡର,
ଦୈବ-ବଳ ଦେଇ ମାନବୀ-ବୁଦ୍ଧିରେ
ରହନ୍ତି ଧରଯା କର ।
ଅମଙ୍ଗଳକୁ ଜନ୍ମ ଲଭିଥିଲା
ମହାବୀର ଦଶାନନ,
ନର-ଖର-ହର- ପୀଡ଼ାରେ ସଂସାରେ
ମାନିଲା କାଳ ଶାସନ ।
ରାବଣ-ଭଗିନୀ ଶୂର୍ପଣଖା ଥିଲା
ସେ ମହା-କଳହ-ମୂଳ,
ତୁମ୍ଭ ସୀତା ଯୋଗୁଁ କୋପାନ୍ଧ ଏବେ
ହୋଇଛି ରକ୍ଷକୁଳ ।"

## ସପ୍ତମ ସର୍ଗ

ଶୁଣି ଉଷସଙ୍କ ଅଗ୍ରର୍ଯ୍ୟ ବଚନ
ମନେ ମନେ ନେଲା ବୁଝି,
ପ୍ରକାଶ୍ୟେ ବୋଇଲା, "କି ଯଶ ବଢ଼ିବ
ମାନବ ସଙ୍ଗରେ ଯୁଝି ?
ମାନବଙ୍କୁ ଯେବେ ଭରସା କଲେଣି
ଦେବେ ଲଭି ଅମ୍ବୁ ଦର୍ପ,
ଦେବତାଙ୍କ ବଳ ଜଣାଗଲା, ଏଥି
ନୁହେଁ ଏ ଅମ୍ବର ଜୟ ?
ଚାଲ ଯିବା ଜୟ- ପତାକା ଉଡ଼ାଇ
ବଜାଇ ଜୟ-ଢକ୍କା,
ଚିର-ଦିନ ପାଇଁ ରହିଆଉ ଦେବ-
ହୃଦୟେ ଦାନବ-ଶଙ୍କା ।"

ଦଳ-ବଳ ସହ ଦାନବ-ଭୂପତି
ବାହୁଡ଼ିଲା ନିଜ ଦେଶ,
ଅମର-ନଗର ସୁରେଶ ସମ୍ମୁଖେ
କହିଲା ସେହୁ ସନ୍ଦେଶ ।

ଦୁଷ୍ମନ୍ତ ନୃପଙ୍କ ଅଭିଯାନ ହେଲା
ଉତ୍ସବରେ ପରିଣତ,
କୁସୁମ ବର୍ଷଣ କଲେ ତାଙ୍କ ଶିରେ
ଅମର ଯୋଧା ସମସ୍ତ ।